# ଅକ୍ଷର ଖେଳ



## ନାନାବାୟା ଗଳ୍ପ

ଡକ୍ଟର କୃତ୍ତିବାସ ନାୟକ

# ନାନାବାୟା ଗଳ୍ପ

# ଅକ୍ଷର ଖେଳ




ରଚନା : ଡକ୍ଟର କୃତ୍ତିବାସ ନାୟକ

କାର୍ଟୁନ ଚିତ୍ର : ଶିଳ୍ପୀ ଅଶୋକ



ପ୍ରକାଶକ : ଅରୁଣ - ତରୁଣ

ଭି ଆଇ ଏମ୍-୫୫, ଶୈଳଶ୍ରୀ ବିହାର

ଭୁବନେଶ୍ୱର - ୭୫୧୦୨୧

ସଂପର୍କ : ୯୯୩୭୭୪୩୫୦୮

ପ୍ରଥମ ସଂସ୍କରଣ : ଦୁର୍ଗାପୂଜା, ୨୦୧୬

ମୂଲ୍ୟ : ୧୦୦ ଟଙ୍କା ମାତ୍ର

# ସୂଚିପତ୍ର

# ଅଗରପଡ଼ାର ଅନାମ

ଅଗରପଡ଼ାର ଅସନାଗଳିରେ ଅନାମବୁଢ଼ା ରହୁଥିଲା । ଅତୀତର ଅପକର୍ମ ପାଇଁ ଅନୁତାପ କରିକରି ସେ ଅକାଳରେ ଆରପାରିକୁ ଚାଲିଗଲା । ଅମଣିଷ ହେଇ ପୁଅମାନେ ଅବାଟରେ ଯିବାରୁ ବିଚରା ଅଭାବ ଅନଟନରେ ଚଳୁଥିଲା । ଅନେକଦିନ ଅପେକ୍ଷାକରି ସେ ଅନାଥ ହେଇଯାଇଥିଲା । ଅନ୍ୟ ଉପାୟ ନ ପାଇ ସେ ଅସହାୟ ଭାବରେ ଜୀବନ କାଟୁଥିଲା । ଅନସୂୟା ପୁତ୍ରସ୍ନେହରେ ଅନ୍ଧହେଇ ଅକାତର ଭାବରେ ଅଯଥା ଖର୍ଚ୍ଚ କରୁଥିଲା । ଅଲିଅଳି ଝିଅ ଅନୁପମା ପାଇଁ ସେ ଅଲଗା ଅଲଗା ଅଦରକାରୀ ଜିନିଷ କିଣୁଥିଲା । ଅଖିଆ ଅପିଆ ରହି ସେ ଅନ୍ୟମାନଙ୍କ କଥା ବୁଝେ । ଅଢ଼େଇଟା ବାଜିବା ପର୍ଯ୍ୟନ୍ତ ସେ ଅଗାଧୁଆ ଥାଏ । ଅଘଷା ପାଟିରେ କିଛି ଟିକେ ଦେଇପାରେନା ।

ଅଖିଳର ଅଜା ଥରେ ଆସି ଅକାଟ୍ୟ କଥାପଦେ କହିଥିଲେ- "ଅଧିକ ପିଲାହେଲେ ଅରମା ହେଇଯିବେ । ଅପାଠୁଆ ପିଲା ଅନାର୍ଯ୍ୟ ହେଇ ଅସୁବିଧା ସୃଷ୍ଟିକରନ୍ତି । ଅତିବେଶି ସ୍ନେହରେ ବଢ଼ିଥିବା ପିଲା ଅକର୍ମା ହେଇଯାଆନ୍ତି । ଅନିଚ୍ଛାସତ୍ତ୍ୱେ ଅରମା, ଅନାଡ଼ି ପିଲାମାନଙ୍କୁ ଅନୁଶାସନରେ ସାବାଡ଼ କରିବାକୁ ହୁଏ । ଅନ୍ଧକାର ଭବିଷ୍ୟତ ଭିତରକୁ ପିଲାମାନେ ଚାଲିଯିବା ପୂର୍ବରୁ ଅସମୟକୁ କେମିତି ଅନୁକୂଳ କରାଯାଏ, ଅବଶ୍ୟ ସେ କାମ ତୁ କରିବୁ । ଅନୁଚିତ ଅନୁଗ୍ରହ ଅକର୍ମାଙ୍କୁ ଅପାରଗ କରିଦିଏ । ଅମଣିଷକୁ ବି ମଣିଷ କରିହେବ । ଅସମ୍ଭବ କିଛିନାହିଁ, ଚେଷ୍ଟାକଲେ ସବୁ ସମ୍ଭବ ।"

ଅଣଦେଖା କରିଥିଲେ-ତାଙ୍କକଥାକୁ ସମସ୍ତେ ।

ଅନୁପମାକୁ ଏବେ ଅଣତିରିଶ ବର୍ଷ ହେଲାଣି, ଅବିବାହିତା ଅଛି । ଅଲୋଡ଼ା, ଅଖୋଜାହେଇ ଘରେ ରହିଛି । ଅକଥା କହି ସବୁଠି ଅପ୍ରିୟ ହେଉଛି ।

ଅଜସ୍ର ସୁଖ ଆଶାରେ ଅନାମ ଆଠଟା ପୁଅଙ୍କୁ ଜନ୍ମ ଦେଇଥିଲା । ସବୁଗୁଡ଼ାକ ଅଯୋଗ୍ୟ, ଅକର୍ମା ହେଇଗଲେ । ଅପକର୍ମ କରି ଅପଯଶ ଅର୍ଜିଲେ । ଅଖିଳ ବଡ଼ପୁଅହେଇ ତ ଅପାଠୁଆ, ଅମାନିଆଁ । ଅଜୟଟା ଅପଗଣ୍ଡ । ଅରମା ଭଳି ବଢ଼ିଯାଇଛି ସିନା କୌଣସି କାମକୁ ନୁହଁ । ଅଭିରାମ ଅଜାଗାକୁ ଯାଇ ଅପନ୍ତରାରେ ପଡ଼ିଥାଏ । ଅମର ଅନେକ ଅପରାଧ କରି ଜେଲର ଅନ୍ଧାର ଘରେ ସଢ଼ୁଛି । ଅକ୍ଷୟ ତ ଅଜାତିରେ ବାହାହେଇ ଅଲଗାହେଇ ରହୁଛି । ଅଶୋକ ଅତ୍ୟଧିକ କ୍ରୋଧୀ । ଅକାରଣରେ ଅସଭ୍ୟ ବ୍ୟବହାର କରି ଅଜ୍ଞାନ ହେଇଯାଏ । ଅଶାନ୍ତି ସୃଷ୍ଟିକରେ । ଅନିଚ୍ଛୁକ କାମ କରେ । ଅଭୟ କଥା ଛାଡ଼ ସେ ଜନ୍ମରୁ ଅକ୍ଷମ । ଅଙ୍ଗ-ପ୍ରତ୍ୟଙ୍ଗ ତାର ଅଚଳ । ଅନନ୍ତ ଗେଲବସର ସବୁଠୁ ସାନ, ତା କଥା ଅଲଗା । ଅଜଣା ବାବାଜୀଟା ତାକୁ ଛୋଟବେଳୁ ଅପହରଣ କରି ନେଇଗଲା ଯେ, ଅଣଲେଉଟାହେଇ ରହିଗଲା ।

ଅନାମ ବିଚରା ପତ୍ନୀ ଅନସୂୟାକୁ କିଛି କହିପାରୁ ନ ଥିଲା ।

୦୦୦



# ଆଶୁତୋଷର ଆଈ

ଆଶୁତୋଷର ଆଈ ଆମକୁ ଭାରି ଆଦର କରନ୍ତି । ଆସନ ପକେଇ ଆଦିମ ଯୁଗର ଗପ କହି ଆମକୁ ଆମୋଦିତ କରନ୍ତି । ଆକାଶରେ ଆତଯାତ ହେଉଥିବା ଆତତାୟୀମାନଙ୍କ କଥା ଆଉ ଡାହାଣୀ ଆଲୁଅ ଗପ କହି ଆମକୁ ଆଶ୍ଚର୍ଯ୍ୟ ଚକିତ କରିଦିଅନ୍ତି । ଆମେ କେବେ ଆନନ୍ଦିତ ପୁଣି କେବେ ଆତଙ୍କିତ ହେଇପଡୁ । ଆଈର ଆଜିକାଲିର ଆଧୁନିକ ଜିନିଷ ପ୍ରତି ଆଗ୍ରହ ନ ଥାଏ ।

ଆଷାଢ଼ ମାସରେ ମୋ ଭାଇ ଆନନ୍ଦ ଗୋଟାଏ ମୋବାଇଲ ଫୋନ୍ ଆଣି ଆଈଙ୍କୁ ଦେଇଥିଲା । ଆମେ ଅଜା, ଆଈଙ୍କୁ ଫୋନ୍ କରିବା ଶିଖେଇଦେବାରୁ ସେମାନେ ଆମକୁ ଆଶୀର୍ବାଦ କଲେ । ଆନନ୍ଦରେ ତାଙ୍କ ଆଖି ତରାଟି ହେଇଯାଇଥିଲା ।

ଆଶ୍ୱିନ ମାସରେ ଅଜା, ଆଈଙ୍କ ଫୋନ୍‌ନେଇ ଆଖୁବାଡ଼ିକୁ ଯାଇଥିଲେ । ଆକସ୍ମିକ ଭାବରେ ତାଙ୍କ ଫୋନ୍‌ଟା ହଜିଗଲା । ଆଶା ନ ହରେଇ ଆଖପାଖ, ଆଗପଛ ଆହୁରି କେତେଜାଗା ଖୋଜିଲେ । ଆଈଙ୍କର ଆପାଦମସ୍ତକ ଥରିଗଲା । ଆଖିରୁ ଲୁହଝରାଇ କହିଲେ-"ଆକାଶଟା ମୋ ଆଗରେ ଖସି ପଡ଼ିଲା ପରି ଲାଗୁଛି । ଆନନ୍ଦ ନାତିଟୋକା ସହିତ ମୁଁ କେମିତି ଆଳାପ କରିବି ?"

ଆକୁଳିତ ଆଈଙ୍କ ମୁହଁକୁ ଦେଖି ଅଜା ଆଶ୍ୱାସନା ଦେଇ କହିଲେ- "ଆଜି ମୁଁ ଆଳି ବଜାରକୁ ଯାଇ ଆଉ ଗୋଟାଏ ଫୋନ୍ କିଣି ଆଣିବି । ଆଉ କାହାପାଖରେ ଆପତ୍ତି କରନାହିଁ ।"

ଆଜ୍ଞାବହ ଆଈ ଆଖି ମଳିମଳି ଭାଗ୍ୟକୁ ଆଦରି ରହିଲେ ।

ଆମେ ଦିନେ ଶୁଣିବାକୁ ପାଇଲୁ, ଆଳି ବଜାରରେ ବସି ଅଜା ଆଲୋଚନା କରୁଥିଲେ-"ଆପଦ ବିପଦରେ କିଏ ମୋତେ ସାହାହେବ ? ଆଃ ! କି ଦୁଃଖ ! ଆନନ୍ଦର ଆଈଙ୍କ ଫୋନରୁ ରୋମିଂ ଆକାରରେ ଏବେ ଅଧିକ ଟଙ୍କା କଟୁଥିବ । ଆଖୁବାଡ଼ିରୁ ତ ଆଜି ମୋତେ ସେ ହଜିଲା ଫୋନ୍‌ଟା ମିଳିଗଲା । ଆଖୁରସ ଆଟିକାରେ ପଡ଼ି ଫୋନ୍ ଖୋଳଟା ଖୋଲିଯାଇଥିଲା । ଆହ୍ଲାଦିନୀ ନାମରେ ଆମର ଗୋଟାଏ ଗାଈଥିଲା । ଆଖୁରସ ସହିତ ସିମ୍‌ଟାକୁ ସେ ଖାଇଦେଇଥିଲା । ଆହତ କରିଦେଲି ତାକୁ ପିଟିପିଟି । ଆଦାୟ କରି ପାରିଲି ନାହିଁ ସେ ସିମ୍‌ଟାକୁ । ଆହ୍ଲାଦିନୀ ଗାଈକୁ ଆଜମ୍‌ଗଡ଼ର ଆଲ୍ଲାଉଦ୍ଦିନକୁ ମୁଁ ରାଗରେ ବିକିଦେଇଛି ।

ଆଦରଣୀୟା ଗାଈ ଆହ୍ଲାଦିନୀ ତ ଏବେ ଅନ୍ୟରାଜ୍ୟରେ ରହୁଛି । ଆଜିର ଦିନରେ ବି ସିମ୍‌ଟା ତା ପେଟରେ ରହିଯାଇଛି । ଆଉ ଏବେ ମୁଁ କଣ କରିବି ? ଆପଣମାନେ ମୋତେ ଦୟାକରି ଆବଶ୍ୟକ ଆଦେଶ ଦିଅନ୍ତୁ ।"

ଆମେ ଅଜାଙ୍କଠାରୁ ଆଈଙ୍କ ଫୋନ୍‌କଥା ଶୁଣି ଆଁ-କରି ରହିଗଲୁ ।

୦୦୦

# ଇନ୍ଦ୍ରଜିତ ଓ ଇନ୍ଦ୍ରାଣୀ

ଇନ୍ଦ୍ରଜିତଙ୍କ ଝିଅ ଇନ୍ଦିରା ଇତିହାସର ଛାତ୍ରୀ । ଇଂରାଜୀ ପଢ଼ିବାକୁ ସେ ଇଚ୍ଛା କରୁଥିଲା । ଇତ୍ୟବସରରେ ମାଆ ଇନ୍ଦ୍ରାଣୀ କହିଥିଲେ- "ଇତିହାସରେ ଇକ୍ଷୁରସ ରହିଛି । ଇତିହାସ ଆମର ଅତୀତକୁ ଜାଣିବାକୁ ଇନ୍ଧନ ଯୋଗାଏ । ଇନ୍ଦ୍ରଚାପ ଜୀବନ ପାଇଁ ଅତୀତକୁ ଜାଣିବାକୁ ହେବ ।"

ଇନ୍ଦିରା ପଚାରିଥିଲା- "ଇନ୍ଦ୍ରଚାପ କଣ ମାଆ ?"

ଇନ୍ଦ୍ରାଣୀ କହିଥିଲେ- "ଇପ୍ସିତ ସୁନ୍ଦର ଭବିଷ୍ୟତକୁ ଇନ୍ଦ୍ରଧନୁ ଭଳି ରଙ୍ଗୀନ କରିବାକୁ ଇନ୍ଦ୍ରଚାପ କୁହାଯାଏ । ଇତରମାନେ ଆମକୁ ଈର୍ଷା କରିବାର କାରଣ କଣ ଜାଣିଛୁ ? ଇତିମଧ୍ୟରେ ସେମାନେ ଆମର ଭାଷା, ସାହିତ୍ୟ ଓ ସଂସ୍କୃତିର ଇୟତା ପାଇ ପାରିନାହାଁନ୍ତି । ଇନ୍ଦ୍ରଚାପ ଭଳି ଇ ଅକ୍ଷରରେ କେତେ ଭଲଶବ୍ଦ ଅଛି ଜାଣିଛୁ ? ଇନ୍ଦୀବର ଅର୍ଥ ନୀଳପଦ୍ମ । ଇଭଚ ଅର୍ଥ ହାତୀ । ଇଦାନୀର ଅର୍ଥ ବର୍ତ୍ତମାନ । ଇନ୍ଦୁ ଅର୍ଥ ତୁ ଜାଣିଛୁ-ଚନ୍ଦ୍ର । ସେହିପରି ଇଜ୍ୟା ଅର୍ଥ ପୂଜା । ଇ ଅକ୍ଷରକୁ ନେଇ ବହୁତ ଶବ୍ଦ ରହିଛି । ଇଂରାଜୀ ପଢ଼ି କଣ ତୁ ଇଂଲଣ୍ଡ ଯିବୁ ?



ଇଜିମାଇଲ ଘରେ ଆମେ ରହୁଛୁ । ଈଶାନେଶ୍ୱର ହେଉଛନ୍ତି- ଆମର ଇଷ୍ଟ । ଇନ୍ଦ୍ରିୟମାନଙ୍କର ଈଶ ହେଉଛନ୍ତି-ଈଶ୍ୱର, ଇହଜଗତର ମାଲିକ । ଇତରଜନ ତାଙ୍କ ଇଚ୍ଛାରେ, ଇଶାରା ଆଉ ଇଙ୍ଗିତରେ ଉନ୍ନତ ମଣିଷ ହୁଅନ୍ତି । ଈଶ୍ୱରଙ୍କ ଇଚ୍ଛାକୁ ଇଜ୍ଜତ ଦେଲେ, ଆମେ ଇଜାରାଦାର ମଣିଷ ହୋଇପାରିବା । ଇତସ୍ତତଃ ହେଲେ ଆମର ଇନ୍ଦ୍ରିୟମାନେ ଭ୍ରଷ୍ଟ ହେଇଯିବେ । ଇପ୍ସିତ ପଦାର୍ଥଟିକୁ ପାଇବା ପାଇଁ ଆମକୁ ଈଶ୍ୱରପରାୟଣ ହେବାକୁ ପଡ଼ିବ । ଇଜ୍ଜତର ସହିତ ବଞ୍ଚିବାକୁ ହେଲେ, ଇତିହାସ ,ସାହିତ୍ୟ ଜାଣିବାକୁ ପଡ଼ିବ ।"

ଇନ୍ଦିରା ଏବେ ଇତିହାସ ପଢ଼ି ବାପା ଇନ୍ଦ୍ରଜିତ ଓ ମାଆ ଇନ୍ଦ୍ରାଣୀଙ୍କ ଇଚ୍ଛାକୁ ପୂରଣ କରୁଛି ।

୦୦୦



# ଉପହାର

ଉଃ ! ଆଃ ! ଉଃ-ଆଃ ଶବ୍ଦ ଶୁଣି ବାଟରେ ଉତ୍କଳ ଅଟକିଗଲା । ଉଚିତ ଅନୁଚିତ ବିଚାର କରିପାରିଲା ନାହିଁ । ଉପକାର ଉପରେ ତେଣେ ବକ୍ତୃତା ପ୍ରତିଯୋଗିତା ହେବ ।  ଉଚ୍ଛୁର ହେଇଗଲେ, ଉମାସାର୍ ଉଗ୍ରରୂପ ଧରିବେ । ଉଚ୍ଛୃଙ୍ଖଳ ଉତ୍କଳ ବୋଲି ଉଚ୍ଚାରଣ କରିବେ । ଉପାୟ କିଛିନାହିଁ । ଉଚ୍ଚସ୍ୱରରେ ପୁଣି ଶୁଣାଗଲା-ଉଃ-ଆଃ । ଉଦ୍ଧତପିଲା ଉମେଶ ଏବେ ଯାଇସାରିବଣି । ଉତ୍ତମ ତ ଉଖୁଡ଼ା ଖାଇଖାଇ ଯାଉଥିବ । ଉଷାର କଥା ଛାଡ଼ । ଉଡ଼ିଉଡ଼ି ସେ ଉଦିତ ସାଙ୍ଗରେ ସ୍କୁଟିରେ ଚାଲିଯିବ ।



ଉତ୍କଳର ଉତ୍କଣ୍ଠା ବଢ଼ି ଚାଲିଥିଲା । ଉପର ତଳ, ଏପାଖ ସେପାଖ ଉଣ୍ଡି ପକାଇଲା । ଉପରମୁହାଁହେଇ ଉତ୍ତମର ବାପା ତଳେ ପଡ଼ିଥିଲେ । ଉଦ୍ଦଣ୍ଡ ଭଳି ତାଙ୍କର ଆଚରଣ ବୋଲି ଉତ୍କଳ ଜାଣିଥିଲା । ଉତ୍ତେଜକ ନିଶାଖାଇ ସେ ଦୁର୍ଘଟଣା ଘଟାଇଛନ୍ତି । ଉରୁ ଦୁଇଟି ତାଙ୍କର ଭାଙ୍ଗିଯାଇଥିଲା ।  ଉଦ୍ଧାରକରିବାକୁ ସେ ବିକଳହେଇ ଉଃ-ଆଃ ଚିତ୍କାର କରୁଥିଲେ । ଉଦାରମନା ଉତ୍କଳ ତାଙ୍କୁ ଉପେକ୍ଷା ନ କରି ଉଦ୍ଧାର କରିବାର ଉପକ୍ରମ କଲା । ଉପଯୁକ୍ତ ଚିକିତ୍ସା ଓ ଉପଚାର କରିବାକୁ ଉଦ୍ୟତ ହେଲା । ଉପଦେଶ ଦେବାକୁ ପାଖରେ କେହି ନ ଥିଲେ । ଉପସ୍ଥିତ ବୁଦ୍ଧି ଖଟାଇ ସେ ଉଧାରରେ ରିକ୍ସା ଡକେଇ ଉପମନ୍ୟୁ ଡାକ୍ତରଖାନାକୁ ନେଇଗଲା । ଉଷୁମ କ୍ଷୀର ଆଣି ପିଆଇଲା ।  ଉପଯୁକ୍ତ ଉପଚାର ଉପଲବ୍ଧ କରାଇସାରି ସେ ଉଚ୍ଛନ୍ନହେଇ ସ୍କୁଲକୁ ଧାଇଁଲା । ଉଲ୍‌କା ଭଳି ସ୍କୁଲରେ ପହଞ୍ଚି ଜାଣିଲା- ଉତ୍ତମ ପ୍ରଥମ, ଉଦିତ ଦ୍ୱିତୀୟ ଓ ଉଷା ତୃତୀୟ ହେଇସାରିଛନ୍ତି । ଉପସ୍ଥିତ ନ ଥିବାରୁ ତାର ନାମ ଉହ୍ୟ ହେଇଯାଇଛି ।

ଉତ୍କଳକୁ ଦେଖି ଉମାସାର୍ ଉତ୍ତେଜିତହେଇ ବିଷ ଉଦ୍‌ଗାର କଲେ ।

ଉପଯୁକ୍ତ ସମୟରେ ସେ ବିଳମ୍ବର ଉଦ୍ଦେଶ୍ୟ ଜାଣିପାରି ଖୁସିହେଲେ । ଉଦ୍ଦେଶ୍ୟ ତାର ଉତ୍ତମ ଜାଣିପାରି ଉତ୍ସାହିତ କରି କହିଲେ- "ଉପକାର କଥା ମୁହଁରେ କହିବା ଅପେକ୍ଷା ତମେ ଉଚିତ କାର୍ଯ୍ୟ କରିଛ । ଉତ୍କୃଷ୍ଟ କାମ କରିଥିବାରୁ ତୁମେ ବାର୍ଷିକ ଉତ୍ସବରେ ଉତ୍କର୍ଷ ଉପାଧିରେ ଭୂଷିତ ହେବ । ଉପହାର ତ ମୁଁ ଦେବି । ଉପାୟନ, ଉତ୍ତରୀୟ ସ୍କୁଲ ତରଫରୁ ତୁମକୁ ପ୍ରଦାନ କରାଯିବ । ଉପଯୋଗୀ କାମଦ୍ୱାରା ତମେ ଉତ୍ତମର ବାପାଙ୍କୁ ଉପକୃତ କରାଇ ସ୍କୁଲର ମାନକୁ ଉନ୍ନିତ କରିଛ ।  ଉଲ୍ଲେଖନୀୟ ଉପଲବ୍ଧି ପାଇଁ ମୁଁ ଉଲ୍ଲସିତ ହେଉଛି ।"

ଉମାସାର୍‌ଙ୍କ ଉକ୍ତିଶୁଣି ଉତ୍କଳର ମୁଖ ଉଜ୍ଜ୍ୱଳ ହେଇଆସିଲା ।

୦୦୦

# ଏକାଏକା ଏକାଦଶିଆ

ଏକାଦଶିଆ ସବୁବେଳେ ଏକାନ୍ତରେ ଏକାକୀ ବସି କଣ ଭାବୁଥାଏ । ଏଣ୍ଡୁଅଟିଏ ଆସି ତା ଆଗରେ ବସି ମୁଣ୍ଡ ଟୁଙ୍ଗାରେ । ଏଇଠି ବସି କଣ ଭାବୁଛୁ ବୋଲି ପଚାରେ । ଏକଦୃଷ୍ଟିରେ ଏକାଦଶିଆ ତାକୁ ଚାହିଁରହେ । ଏକାଗ୍ରତା ପାଇଁ ସେ ଏଠାକୁ ଆସେ ବୋଲି କହିପାରେନା ।

ଏତାଦୃଶ ଢ଼ଙ୍ଗଦେଖି ଏକାଦଶିଆକୁ କେହି କେହି ଏକଦମ ପାଗଳଟାଏ ବୋଲି ଭାବନ୍ତି ।

ଏକଗୁଇଁଆହେଇ ସେ କେତେ ବା ବସି ଏଣ୍ଡୁଅକୁ ଚାହିଁ ରହିବ ? ଏକଦା ସେ ଏଣ୍ଡୁଅକୁ କହିଲା-

"ଏଇକଥା ତୁ ମୋତେ ଏମିତି ପଚାରିବୁ ନାହିଁ । ଏକାଦିକ୍ରମେ ମୁଁ ତୋତେ ସବୁ କହିବି ।"

ଏକତ୍ର କିଛିଦିନ ରହିବା ଫଳରେ ତାଙ୍କର ବନ୍ଧୁତା ହେଇଗଲା । ଏଣିକି ସେମାନେ ପରସ୍ପରକୁ ଭଲ ପାଇଲେ ।

ଏମନ୍ତେ କିଛିଦିନ ଚାଲିଗଲା । ଏକମନ ଏକମତହେଇ ସେମାନେ ଏକାନ୍ତରେ ବସିଥାଆନ୍ତି । ଏଣ୍ଡୁଅକୁ ଚାହିଁ ଏଥର ଏକାଦଶିଆ ଏକତରଫା କହିଚାଲିଲା-

"ଏକାନ୍ନବର୍ତ୍ତୀ ପରିବାରରେ ଆମେ ଚଳୁଛୁ । ଏମିତି କିଛି ଅଭାବ ଆମର ନାହିଁ । ଏଯାବତ ମୁଁ କିଛିକାମ କରିନାହିଁ । ଏକଲା ରହିବାକୁ ମୋତେ ଭଲଲାଗେ । ଏକ୍ଷଣି ମୁଁ ଈଶ୍ୱରଙ୍କୁ ଖୋଜୁଛି । ଏକପ୍ରକାର ମୋ ମୁଣ୍ଡ ଖରାପହେଇ ଗଲାଣି । ଏମିତି ଜଣେ ବାବାଙ୍କୁ ଖୋଜୁଛି, ଯିଏ ମୋତେ ଏକନାଥ ଏକଦନ୍ତ ଈଶ୍ୱରଙ୍କ ସହିତ ଏକାକାର କରିଦେଇପାରିବ । ଏଇ ହେଉଛି ମିଛମାୟା ସଂସାର । ଏକଥାକୁ କେହି ବୁଝିପାରୁ ନାହାନ୍ତି । ଏଭଳି କାମରେ ମୋତେ କେହି ସାହାଯ୍ୟ ବି କରୁ ନାହାନ୍ତି । ଏକଘରିଆହେଇ ରହିବାକୁ ମୋତେ ଏକଦମ ଭଲଲାଗୁଛି । ଏଣ୍ଡୁଅହେଇ ତୁ ମୋଭଳି ଏଇଠି ଏକାଗ୍ରତା ଶିକ୍ଷା କରୁଛୁ । ଏମାନେ ସବୁ କାହିଁକି ପାରିବେ ନାହିଁ ? ଏଣିକି ଏକୀଭୂତହେଇ ଆମେ ଦୁହେଁ ଏଇମିତି ଈଶ୍ୱରଙ୍କୁ ଖୋଜିବା । ଏଇଟା ମୋର ଶେଷ ଇଚ୍ଛା ।"



ଏଣ୍ଡୁଅଟା କିଛି ବୁଝିଲା କି ନାହିଁ କେଜାଣି, ଏପଟ ସେପଟକରି ମୁଣ୍ଡକୁ ହଲେଇଦେଲା । ଏକତରଫା ସବୁକଥା କହିସାରି ଏକାଦଶିଆ ନିରବ ହେଇଯାଇଥିଲା ।

୦୦୦

# ଓକିଲଙ୍କ ଓଝାବୁଢ଼ା

ଓମ୍‌ପ୍ରକାଶବାବୁ ଓକିଲାତି କରନ୍ତି । ଓଡ଼ିଆ ଓକିଲ ଭାବରେ ତାଙ୍କର ଓଡ଼ିଶାରେ ସୁନାମ ରହିଛି । ଓଳିଏ ବସିପଡ଼ିଲେ ପୁଳାଏ ଟଙ୍କା ମିଳିଯାଏ । ଓଝାବୁଢ଼ା ତାଙ୍କଘରେ କାମ କରିକରି ଓଟପରି କୁଜା ହେଇଗଲାଣି । ଓଲାଟାଏ ବୋଲି ଜାଣି ଓମ୍‌ପ୍ରକାଶବାବୁ ତାକୁ ଓଳାସୁଣି ମେଳାରୁ ଧରି ଆଣିଥିଲେ ।

ଓଳଗ ଗାଆଁ ହେଉଛି, ଓମ୍‌ପ୍ରକାଶବାବୁଙ୍କ ଶ୍ୱଶୁରଘର । ଓଷା-ବ୍ରତରେ ଓଝାବୁଢ଼ା ଓଳଗ ଯାଇ ପାଚିଲା ଓଉ ନେଇଆସେ । ଓଳାଭର ବଜାରରୁ ସଉଦାପତ୍ର ଆଣେ । ଓଜନଦାର କାମଦେଖି ସେ କେବେ ସେଥିରୁ ଓହରିଯିବା ମଣିଷ ନୁହେଁ । ଓଝାବୁଢ଼ା ଯେତେଦୁଃଖରେ ଥିଲେ ବି ତା ଆଖି କେବେ ଲୁହରେ ଓଦା ହୁଏନା । ଓଠରେ ତାର ସବୁବେଳେ ହସ ଲାଗିରହିଥାଏ । ଓସ୍ତାଦ ଭଳି ଓଡ଼ିଶୀ ଗୀତଗାଇ ସେ ଆମକୁ ଖୁସି କରିଦିଏ । ଓଁକାର ଧ୍ୱନିରେ ସେ ପରିବେଶକୁ ଆନନ୍ଦମୟ କରିଦିଏ ।

ଓଃ ! କି ବଢ଼ିଆ ତାର କଣ୍ଠସ୍ୱର । ଔଷଧରେ ରୋଗ ଭଲହେଇ ନ ପାରେ କିନ୍ତୁ, ଓଝାବୁଢ଼ାର ହସବଟିକା ନିଶ୍ଚୟ ଭଲକରିଦେବ ।

ଓଝାବୁଢ଼ା ଆମକୁ କହେ-"ଓଧପରି ପାଣିରେ ବୁଡ଼ି ମୁଁ ମାଛଧରି ଆଣିପାରିବି । ଓଡ଼ଶ ଭରା ଖଟିଆରେ ଆରାମରେ ସାରାରାତି ଶୋଇପାରିବି । ଓକିଲବାବୁ ମୋତେ ଭଲ ପାଆନ୍ତୁ କି ନ ପାଆନ୍ତୁ, ଔଚିତ୍ୟ କାମରୁ ମୁଁ କେବେ ବି ହଟିବି ନାହିଁ । ଓର ମିଳିଲେ, ମାନେ ସୁଯୋଗ ମିଳିଲେ ମାଲିକର ଉପକାର କରିବି ସିନା ବେଇମାନୀ କରିବି ନାହିଁ । ଓ-- ବୋଲି କରିବାକୁ କେହି ସୁଯୋଗ ପାଇବେନି ।"

ଓଲଟପାଲଟ କାମ ତ ତାକୁ ଜଣାନାହିଁ । ଓସାରିଆ ଓଠକୁ ସେ ମେଲେଇ କହେ-"ଓଗାଳି ଧରି କାହାରି ବାଟବନ୍ଦ କରିବା ପାପ । ଓଜର ମାଗିବା, ମାନେ କ୍ଷମାମାଗି ନିଜର ଭୁଲ ସ୍ୱୀକାରକରିବା କିଛି ଖରାପ କାମ ନୁହଁ । ଓର ଦେଖି, ମାନେ ସୁଯୋଗ ଦେଖି ଭୁଲପାଇଁ କ୍ଷମା ମାଗିନେବା ଭଲଗୁଣ ।"

ଓଝାବୁଢ଼ାର ଔଜସ୍ୱ କଥାର ଓଜନ ଜାଣି ଆମେ ତାକୁ ଭାରି ଭଲପାଉ ।

୦୦୦

# କଳାକାର କମଳେଶ

କବି କଳାକାର ଓ କଥାକାର କମଳେଶବାବୁ କଲମ ଚଳାଇ ସ୍ୱନାମ ଅର୍ଜନ କରିଛନ୍ତି । କେତେଗୁଡ଼ିଏ ବହି ଛାପି କାହାକୁ କାହାକୁ ବାଣ୍ଟନ୍ତି । କାହିଁରେ କେତେ ଆନନ୍ଦ ସେଥିରୁ ପାଆନ୍ତି । କହନ୍ତି–ଜ୍ଞାନ ବିତରଣ କରି ମୁଁ ଲୋକଙ୍କୁ ସଚେତନ କରୁଛି । କୃପଣ ପରି ଚଳିବି ସିନା କଠିଣ ପରିଶ୍ରମ କରି ଋଣ ଶୁଝିବି । କାହାର ମୁଁ କିଛି କ୍ଷତି କରୁନାହିଁ ।

କଳିଘୋଡ଼ି କାମିନୀ ତାଙ୍କର ସ୍ତ୍ରୀ । କଟୁକଥା କହି ସେ ତାଙ୍କର କଳାକର୍ମକୁ ନିନ୍ଦା କରନ୍ତି । କବିପଣିଆକୁ ତାଙ୍କର ଧିକ୍କାର କରନ୍ତି । କେତେଥର କହିଲେଣି–"କାହିଁକି ଏମିତି କୁତୁକୁତୁ ହେଉଛ ? କଣ ମିଳିବ ସେଥିରୁ ? କରଜକରି ବହି ଛାପୁଛ । କଷ୍ଟକରି ତାକୁ ଶୁଝୁଛ । କର୍ମକ୍ଷେତ୍ରରେ ତମେ ତ କୁଶଳୀ କାରିଗର ଭାବରେ ନାଆଁ କରିଛ । କର୍ମକର୍ତ୍ତାମାନେ ତମ ଉପରେ ଖୁସି । କାରଖାନାରୁ ଯାହା ଦରମା ମିଳୁଛି, କଣ ସେତିକିରେ ଆମ କୁଟୁମ୍ବର କେଇଜଣ ଖାଇପିଇ ଚଳିପାରିବେ ନାହିଁ ? କଳିଜା ଫଟେଇ ଖଟିଖଟି ପରର କଲ୍ୟାଣ କରି କି ଲାଭ ?"

କର୍କଶ କଣ୍ଠରେ କାମିନୀ ଯେତେଯାହା କହିଲେ ବି କମଳେଶବାବୁ କିଛି କହନ୍ତି ନାହିଁ ।



କେଇଦିନ ହେଲା ତାଙ୍କ କୁଳନନ୍ଦନ କେଦାର ବି କାମିନୀର କଥାକୁ ସମର୍ଥନ ଜଣାଉଛି । କହିଲାଣି–"ବାପା ! କଲମ ଛାଡ଼ି ତମେ ଏବେ ଆରାମ କର । କୁଡ଼କୁଡ଼ ବହି ଛାପିବା ଦରକାର ନାହିଁ । କେହି ତମର ବହିନେଇ କରଜ ଶୁଝିବେ ନାହିଁ । କବି କଳାକାରଙ୍କୁ ପଚାରେ କିଏ ? କଳାକାରମାନେ ତ କାଳେକାଳେ ଗରିବ ରହିଛନ୍ତି । କେବଳ କାରଖାନାରୁ ପାଉଥିବା ଦରମାରେ ଆମେ ଖୁସିରେ ଚଳିବା । କବିତା ଫବିତା ଲେଖିବା ଏବେ ବନ୍ଦକର ।"

କମଳେଶବାବୁ ପୁଅକୁ କହିଲେ– "କାହାଣୀ ସେଇୟା ନୁହଁ । କେବଳ ନିଜପାଇଁ ଅର୍ଥ ଖର୍ଚ୍ଚକଲେ, ମଣିଷ ତା ଜୀବନକୁ ବଞ୍ଚାଇ ରଖେ । କିନ୍ତୁ ଜୀବନ ଗଢ଼ିପାରେ ନାହିଁ । କ୍ୱଚିତ ମଣିଷ ଜୀବନକୁ ଗଢ଼ିବା ପାଇଁ ଆଉ କିଛି କରନ୍ତି । କାରଖାନାରେ କାମକରି ମୁଁ ବଞ୍ଚିଛି, କୁଟୁମ୍ବକୁ ବଞ୍ଚାଉଛି । କରଜକରି କଥା ଓ କବିତା ବହି ଛାପୁଛି, କେବଳ ମୋ ଜୀବନକୁ ଗଢ଼ିବା ପାଇଁ ।"

୦୦୦



# ଖମାର ଗାଆଁର ଖଗେଶ୍ୱର

ଖମାର ଗାଆଁର ଖଗେଶ୍ୱର ଖଟୁଆ ଖାନଦାନ ଘରର ପିଲା । ଖାଣ୍ଟି ଦେଶପ୍ରେମୀ ସୈନିକ ଭାବରେ ସେ ଖ୍ୟାତି ଅର୍ଜନ କରିଥିଲେ । ଖବରକାଗଜରେ ତାଙ୍କ ପ୍ରଶଂସା ପ୍ରଚୁର ପରିମାଣରେ ପ୍ରକାଶ ପାଇଥିଲା । ଖରା, ବର୍ଷା, ଶୀତ କି କାକରକୁ ସେ ଖାତିର କରୁ ନ ଥିଲେ । ଖେଳଣା ପରି ସେ ବନ୍ଧୁକ ଉଠେଇ ଖେଳୁଆଡ଼ ପରି ଖୋଲା ଯୁଦ୍ଧକ୍ଷେତ୍ରକୁ ଡେଇଁପଡୁଥିଲେ । ଖୁଣ୍ଟପରି ଖାଡ଼ାହେଇ ସେ ଶତ୍ରୁର ସାମ୍ନା କରୁଥିଲେ । ଖଣ୍ଡାଧାରରେ ଚାଲିବା ତାଙ୍କର ଅଭ୍ୟାସ । ଖାସ୍ ତାଙ୍କପାଇଁ ଶତ୍ରୁପକ୍ଷରେ ଆତଙ୍କ ଖେଳିଯାଉଥିଲା ।

ଖରାପ ସମୟ ତ ସୁଯୋଗ ଖୋଜୁଥାଏ । ଖାଦ୍ୟ ଖାଇବାବେଳେ ଖଞ୍ଜାକରି ଜଣେ ଶତ୍ରୁ ସୈନ୍ୟ ତାଙ୍କ ସାମନାକୁ ଆସିଗଲା । ଖାଲୁଆ ଜାଗାରେ ସେ ଥିଲେ । ଖର୍ବକାୟ ପରି ସେ ନଇଁପଡ଼ିଥିଲେ । ଖସିଯିବାର ବାଟ ନ ଥିଲା । ଖଳଶତ୍ରୁର ଖରଶାଣଦିଆ ଖଣ୍ଡା ତାଙ୍କ ଖପୁରିକୁ ଖଣ୍ଡିଆ କରିପକାଇଲା । ଖଣ୍ଡିଆହେଇ ମଧ୍ୟ ସେ କାହାରିକୁ ଡରିଲେ ନାହିଁ । ଖତେଇ ହେଲାପରି ମୁହଁଟାକୁ କରି ସେ ଖାଲି ହସିଲେ । ଖନେଇ ଖନେଇ କହୁଥିଲେ- "ଖବରଦାର, ଖବରଦାର ।"

ଖାଲ ଭିତରେ ଲୁଚିରହିଥିବା ଆମ ସୈନିକର ଖାସାଗୁଳି ଯାଇ ଖୁନୀ ଶତ୍ରୁକୁ ଖତମ କରିଦେଲା । ଖଗେଶ୍ୱର ଆହତହେଇ ସେଇ ଖାଲରେ ପଡ଼ିଯାଇଥିଲେ । ଖବରପାଇ ଅନ୍ୟମାନେ ତାଙ୍କୁ ଖଟିଆରେ ପକାଇ ଖଚର ପିଠିରେ ରଖି କ୍ୟାମ୍ପକୁ ଆଣି ଚିକିତ୍ସାକଲେ । ଖରବେଗରେ ସେ ସୁସ୍ଥହେଇ ଖୁସିମନରେ ପୁଣି ଶତ୍ରୁକୁ ଖୋଜିବାକୁ ଖେଦିଚାଲିଲେ ।

୦୦୦

# ଗୋବରା ଗଧ ଗୀତ ଗାଇଲା

ଗଦାଧରପୁର ଗାଆଁର ଗନ୍ଧିଆସାହିରେ ଗୋବରା ଗଉଡ଼ର ଘର । ଗଣ୍ଡମୂର୍ଖ ଗୋବରା ଗେରୁଆ ଗାମୁଛା ପିନ୍ଧି ଗାଆଁରେ ବୁଲେ । ଗୋବରା ଗୋଡ଼ରେ ତାର ସବୁବେଳେ ଗୋବର ଲାଗିଥାଏ । ଗେଡ଼ା ହେଲେ କଣହେବ ? ଗୋଛାଏ ଚୁଟିରଖି ଗୋଟାଏ ଗଣ୍ଠି ପକାଇଥାଏ । ଗୋରା ଡକଡକ ଗୋଲମୁହଁରେ ଥିବା ତା ଗ୍ରହଣ ଖଣ୍ଡିଆ ଓଠଟା ଖଣ୍ଡେଦୂରକୁ ଦେଖାଯାଏ । ଗ୍ରୀଷ୍ମଋତୁରେ ସେ ଗରମ ସମ୍ଭାଳି ନ ପାରି ଗଛମୂଳରେ ବସେ । ଗାଉଁଲିଆ ଲୋକମାନେ ତାକୁ କୃପଣ ଗେଧବୁଢ଼ା ବୋଲି କହନ୍ତି ।

ଗାଈଗୋରୁ ଚରାଇବା, ଗୋଦୋହନ କରିବା, ଗୋଠରୁ ଗୋବର କାଢ଼ିବା କାମ ସହିତ ସେ ଗ୍ରାହକଙ୍କୁ ଗୋରସ ବିକିବା କାମ ମଧ୍ୟକରେ । ଗୁହାଳରେ ସେ ଗାଈଗୋରୁଙ୍କ ସହିତ ଗୋଟାଏ ଗଧକୁ ରଖିଥାଏ । ଗଧର ନାମ ରଖିଥାଏ-ଗଙ୍ଗା । ଗେହ୍ଲା ଝିଅପରି ଗଙ୍ଗା ଗୋବରା ସହିତ ଗେଲହୁଏ । ଗାଧୋଇଦେଇ ଗଙ୍ଗାକୁ ଗାଜର ଖାଇବାକୁ ଦିଏ । ଗୋଡ଼ଖୁରାରେ ଗନ୍ଧତେଲ ମାଖିଦିଏ ।

ଗୋବରା ଭାବିଲା-"ଗଙ୍ଗାକୁ ଗୀତ ଶିଖେଇବ । ଗୀତ ଗାଇଲେ ତାକୁ ନେଇ ଗାଆଁରେ ବୁଲେଇବ । ଗଣ୍ୟମାନ୍ୟ ଗାୟିକା ଗଙ୍ଗାକୁ ଦେଖିବାକୁ ଗାଆଁଗଣ୍ଡାର ଲୋକେ ଗହଳି ଜମେଇବେ । ଗେଣ୍ଡୁମାଳ ତା ଗଳାରେ ଦେଇ ଆଉଥରେ ଗାଆ, ଆଉଥରେ ଗାଆ କହିବେ । ଗଇଁଠା ପିଠା ଖାଇବାକୁ ଦେବେ । ଗଦି ବିଛାଇ ଶୁଆଇ ପକାଇବେ ।"



ଗମ୍ଭୀରହେଇ ସେ ଦିନେ ଗଧକୁ ତାର ମନର କଥା କହିଲା । ଗଙ୍ଗା ତା କଥାଶୁଣି ଗରଗର ହେଲା । ଗର୍ଦ୍ଦନ ହଲେଇ ସେ ଗୀତ ଗାଇବାକୁ ମନାକଲା ।

ଗଧ ଅମାନିଆଁ ହେବାରୁ ତା ଗାଲରେ ଠୋ-କରି ଚାପଡ଼େ ଲଗାଇଲା । ଗଁ-ଗଁହେଇ ଗଳାଫଟା ଗର୍ଜନକରି ଦିନେ ଗୋବରା ଗଙ୍ଗା ଗଧକାନରେ କର୍ଣ୍ଣାଟକୀ ଗୀତ ଶୁଣାଇଲା । ଗଧ ତାର ଗଚ୍ଛିତ ରାଗକୁ ତ ଚାପି ରଖିଥିଲା । ଗୋଡ଼ଦୁଇଟାକୁ ଟେକି ଗୋବରାକୁ ଗୋଡ଼େଇଲା । ଗୋବରା ଗୋଟାଏ ଗାତ ଭିତରେ ପଡ଼ିଗଲା । ଗଙ୍ଗା କି ଛାଡ଼ିବା ଗଧ ହେଇଛି ? ଗୁଡ଼େଇ ତୁଡ଼େଇ ପଛଗୋଡ଼ରେ ଲାତ ଗାଦିଚାଲିଲା ।

ଗୋବରା ଗଭୀର ଗାତରେ ପଡ଼ି ଗୋବିନ୍ଦ-ଗୋବିନ୍ଦ ଗର୍ଜନକରି ନିସ୍ତେଜ ହେଇଗଲା । ଗାଆଁଲୋକେ ଗୁଜବ ସୃଷ୍ଟିକଲେ, ଗଧକୁ ଗୋବରା ଗୀତ ଶିଖେଇ ପାରିଲା ନାହିଁ, ଗଙ୍ଗା ଗୋବରାକୁ ଗୀତ ଗାଇବା ଶିଖାଇଦେଇଛି ।

୦୦୦

# ଘନିଆଁର ଘୁଷୁରି

ଘଟଗାଁର ଘନଶ୍ୟାମକୁ ସମସ୍ତେ ଘନିଆଁ ବୋଲି ଡାକନ୍ତି । ଘରଜୁଇଁଆହେଇ ସେ ଘେଁସ ଗାଆଁକୁ ଆସିଥିଲା । ଘରୋଇ ଚାକିରିରେ ଘାଇଲା ହେବାରୁ ଘରେ ରହିବା ନିଶା ତାକୁ ଘାରିଲା । ଘନିଆଁର ଘରଣୀ ଘୁଙ୍ଗୀ ତାକୁ କହିଲା-"ଘୋଡ଼ାଟିଏ କିଣିଆଣ । ଘୋଡ଼ୀ ଆମର ଅଭାବକୁ ଘୁଞ୍ଚେଇ ଦେଇପାରିବ । ଘୋଡ଼ୀ ଉପରେ ବସି ଆମେ ଘଟଗାଁ ବୁଲିଯିବା । ଘାଗରାରେ ଜରି ଲଗେଇ ତାକୁ ପିନ୍ଧେଇ ଦେବା । ଘଟପୁରରୁ ଘଟଗାଁ ପର୍ଯ୍ୟନ୍ତ ଲୋକେ ଘାବରାହେଇ ଆମକୁ ଚାହିଁ ରହିବେ । ଘର୍ଘର ନାଦକରି ସେ ଘୋଡ଼ାଗାଡ଼ିକୁ ଘୋଷାରି ଘୋଷାରି ନେଇଯିବ । ଘାସ ଖାଇବାକୁ ତ ଅଭାବ ନାହିଁ । ଘଞ୍ଚ ଜଙ୍ଗଲରୁ କାଠ ବୋହି ଆଣିବ । ଘଣା ପେଲି ତେଲ ବାହାର କରିବ ।"



ଘୁଙ୍ଗୀ କଥାରେ ରାଜିହେଇ ଘନିଆଁ ଘଟଗାଁକୁ ବାହାରିଲା । ଘାଟରେ ଘାଟିଆ ତାକୁ ବୁଝେଇଦେଲା- "ଘୁଷୁରି ପାଳିଲେ ବହୁତ ଲାଭହେବ । ଘୋଡ଼ୀ ବେପାର ଏଠି ଚାଲିବ ନାହିଁ । ଘୋଡ଼ୀ ଗୋଟାକର ଦାମ କେତେ ଜାଣିଛୁ ? ଘୁଷୁରି ଚାଷରେ ମନ ଦେ ।"

ଘାଟିଆ କଥା ଘନିଆଁ ମନକୁ ପାଇଲା । ଘୋଡ଼ୀ ବଦଳରେ ସେ ଗୋଟାଏ ମାଈ ଘୁଷୁରି କିଣି ଘରକୁ ଫେରିଲା ।"

ଘୁଷୁରିକୁ ଦେଖି ଘୁଙ୍ଗୀର ମନ ଘର ଧରିନେଲା । ଘୁଷୁରିକୁ ସେ ଭାରି ଘୃଣା କରେ । ଘୁଅଖାଇ ଘୁଷୁରି ପଙ୍କରେ ଘାଣ୍ଟିହେବ । ଘୋର ବିରୋଧକରି ସେ ଘନିଆଁ ସହିତ ଘମାଘୋଟ ଝଗଡ଼ା କଲା । ଘୋଷଣା କରି କହିଲା-"ଘରେ ଘୁଷୁରି ରହିଲେ, ଘୁଙ୍ଗୀ ରହିପାରିବ ନାହିଁ ।"

ଘନିଆଁ ବୁଝେଇଦେଲା-"ଘୁଷୁରି ଅପେକ୍ଷା ଘୋଡ଼ାର ଦାମ ଅଧିକ । ଘୁଷୁରିଚାଷରୁ ଟଙ୍କା ବାହାରକରି ଆମେ ଦୁଇଟା ଘୋଡ଼ୀ କିଣିବା । ଘରେ ଥାଇ ତୁ ଦେଖ, ଏ ଘନିଆଁ କେମିତି ଘୁଷୁରିକୁ ସୁକୁମାରୀ କରିଦେଉଛି ।"

ଘଡ଼ିଏ ଭିତରେ ଘନିଆଁ ଘୁଷୁରିକୁ ଘଷିମାଜି ଗାଧୋଇ ଦେଲା । ଘଷିଘରକୁ ଲଗେଇ ଘୁଷୁରି ଖୁଆଡ଼ ତିଆରି କରିଦେଲା । ଘାଗୁଡ଼ି ମାଳି ଆଣି ତା ବେକରେ ଘଣ୍ଟି ଭଳି ଝୁଲାଇଦେଲା । ଘୁଙ୍ଗୁର ହଳେ ତା ଗୋଡ଼ରେ ବାନ୍ଧିଦେଲା । ଘୋଳଦହି ଆଣି ପେଟେ ପିଇବାକୁ ଦେଲା । ଘୁଙ୍ଗୁଡ଼ି ମାରି ଘୁଷୁରି ଶୋଇପଡ଼ିଲା । ଘନିଆଁ ତା ନାଆଁ ଦେଲା-ଘୁଙ୍ଗୁରୀ ।

ଘଟଣାଟା କେତେଦିନ ପରେ ଘୋଷରା ହେଇଗଲା । ଘୁଙ୍ଗୀ ଭାବିଲା-ଘନମୂଳ ନ ଥିବା ଘନିଆଁ ସହିତ ଲାଗିଲେ, ଘୋରରଡ଼ି ଛାଡ଼ିବ । ଘର କରିଥିଲେ ପଥର ପଡ଼ିଲେ ସହି । ଘୁଷୁରିଟା ତ ଆସି ରହିସାରିଲାଣି ଥାଉ ।

୦୦୦

# ଚକରା ପୁଅ ଚଗଲା

ଚନ୍ଦନପୁରର ଚକ୍ରଧର ଚାହାଳିପାଠ ପଢ଼ିସାରି ଚାଷବାସକରି ଚଳୁଥାଏ । ଚକ୍ରଧରଙ୍କୁ ସମସ୍ତେ ଚକରା ନାମରେ ଚିହ୍ନନ୍ତି । ଚନ୍ଦନ ତାର ବଡ଼ପୁଅ । ଚଗଲା ତାର ଡାକନାମ । ଚାକିରି କରିବାକୁ ସେ ଚକର କାଟିକାଟି ଚିଡ଼ିଗଲା । ଚାହୁଁଚାହୁଁ ଚଗଲାର ଚାକିରିକରିବା ବୟସ ଚାଲିଗଲା । ଚକରା କହିଲା- "ଚାଷବାସ କର । ଚାରା କିଣିଆଣି ବିଲରେ ଲଗା । ଚିଆଁ କେତେଟା ଆଣି ଚକଡ଼ାରେ କୁକୁଡ଼ା ଚାଷ ବି କରିପାରିବୁ । ଚାହା ଦୋକାନ କରିବୁ ଯଦି ମୁଁ ଚାନ୍ଦିନୀରେ ଚାଳଘରଟିଏ କରିଦେବି । ଚିଙ୍ଗୁଡ଼ିଚାଷ ପାଇଁ ଆମର ପୋଖରୀ ଅଛି । ଚଉପାଢ଼ିରେ ବସି ଏମିତି ତାସ୍‌ଖେଳି, ଚୁଗୁଲି ଶୁଣି, ଚଷୁକୁଟା କାମ ଆଉ କରନା । ଚେଷ୍ଟାକଲେ ତୁ ସବୁ କାମ କରିପାରିବୁ । ଚିତ୍ତ ଚଞ୍ଚଳ କଲେ, ଚଗଲା ହେଇଯିବୁ । ଚୁପହେଇ ବସି ମୋ କହିବା କଥାକୁ ଚିନ୍ତାକର ।

ଚିରାଫଟା ପିନ୍ଧି ତୋ ପାଇଁ ମୁଁ ଚାନ୍ଦବାଲିରୁ ଚାନ୍ଦୁଆ ପରି ଚାଦର କିଣି ଆଣି ଦେଇଥିଲି । ଚଙ୍ଗଚଙ୍ଗ ହେଇ ଚାକିରି କରିବାକୁ ଗଲୁ । ଚାନ୍ଦିପୁରରେ ତାକୁ କିଏ ନେଇଗଲା । ଚପଲହଲେ କିଣିଦେଇଥିଲି, ଚାରିଦିନ ତଳେ ତାକୁ ହଜେଇଦେଲୁ । ଚାକିରି କରେଇଦେବାକୁ କହି କେତେଚତୁର ଠକଲୋକ ମୋତେ ଚନ୍ଦାକରି ସାରିଲେଣି । ଚାଷରେ ଖଟିଖଟି ମୋ ଚମ ଧୁଡୁଧୁଡୁ ହେଇଗଲାଣି ।

ଚକରାର ସବୁକଥା ଶୁଣି ଚଗଲା ଚୁପ୍‌ଚାପ୍ ସେଇଠୁ ଚାଲିଗଲା । ଚିତ୍‌ହେଇ ଶୋଇ କେତେକଣ ଭାବିଲା । ଚିହ୍ନା ସାଙ୍ଗସାଥୀମାନେ ତ କିଏ କେତେସୁଖରେ ଅଛନ୍ତି । ଚିଡ଼ିଆଖାନାରେ ଜୀବଜନ୍ତୁମାନେ ବି ଭଲରେ ରହିଛନ୍ତି । ଚେଲାହେଇ କେତେ ଠକ ଅଳସୁଆ ମଠରେରହି ଖଟରେ ଶୋଉଛନ୍ତି । ଚିତା ଚଇତନହେଇ ଚିନ୍ତାଶୂନ୍ୟ ଚୋଖାଜୀବନ କାଟିବା ପାଇଁ ସେ ଚିତ୍ତ ସ୍ଥିରକଲା । ଚଣ୍ଡାଳବାବାଙ୍କ କଥା ତାର ମନେ ପଡ଼ିବାରୁ ମନ ତାର ଚହଟି ଉଠିଲା । ଚାଲିଚାଲି ଯାଇ ସେ ବାବାଙ୍କ ଚରଣରେ ଚିରଦିନ ପାଇଁ ଶରଣ ପଶିଲା । ଚଣ୍ଡାଳବାବା ଚପଟରେ ପଡ଼ିଯାଇ ଚଗଲା ଆଉ ଚନ୍ଦନପୁର ଫେରିପାରିଲା ନାହିଁ ।

ଚକରା କହୁଛି- "ଚାମୁଣ୍ଡା ଦେବୀଙ୍କ ପାଖରେ ଚଗଲାକୁ ବଳି ଦିଆ ହେଇଯାଇଛି ।"

୦୦୦

# ଛଇଳି ଛଟକି ଛବିରାଣୀ

ଛବିରାଣୀ ଛତ୍ରପୁର କଲେଜର ଛାତ୍ରୀ ନିବାସରେ ଥାଏ । ଛାତ୍ରୀମାନେ ତାର ଛବିଳ ଗୁଣକୁ ଦେଖି ଛାଏଁ ଛାଏଁ ଡରିଯାଆନ୍ତି । ଛଳନାମୟୀ ଛାତ୍ରୀମାନଙ୍କୁ ସେ ଛାଡ଼ିବା ଝିଅ ନୁହଁ । ଛତରା ଟୋକା ତାର ଛାଇ ମାଡ଼ନ୍ତି ନାହିଁ । ଛୁଞ୍ଚି ଦେଖାଇବା ଲୋକଙ୍କୁ ସେ ଛୁରୀ ଦେଖାଇବା ଝିଅ । ଛୋଟଛୋଟ ଝିଅଙ୍କର ଦୋଷ ଦେଖିଲେ ସେ ଛାଟରେ ପିଟି ପକାଏ ।



ଛିଡ଼ାହେଇଥିବା ଲୋକେ ତାକୁ ଦେଖି ଛାତିରେ ଛେପ ପକାଇ ପଛକୁ ପଳାଇଯାନ୍ତି । ଛୁଟିଦିନରେ ସେ ଛାତ ଉପରେ ଛିଡ଼ାହେଇ ଛକକୁ ଚାହିଁରହେ । ଛେଳିଛୁଆଠୁଁ ଛଞ୍ଚାଣପକ୍ଷୀ ପୁଣି ଛଦ୍ମବେଶୀଠୁଁ ଛୋଟପିଲାଙ୍କୁ ନଜର ପକାଏ । ଛକିରହି ସେ ସମସ୍ତଙ୍କର ଛିଦ୍ରକୁ ଦେଖିପାରେ । ଛାୟାମୂର୍ତ୍ତୀ ପରି ଛୁଟିଆସି ଦୋଷୀକୁ ଧରିପକାଏ । ଛାପାମାରି ଛୋଟ ନଜରବାଲୀଙ୍କ ମନରେ ଛନକା ପୂରେଇଦିଏ । ଛକାପଞ୍ଝା କରି କେହି ଛାତ୍ରୀ ଛାତ୍ରୀନିବାସରୁ ଛୁ ମାରୁଥିଲେ, ଛବିରାଣୀ ତାକୁ ଛଡ଼ି ଦେଖାଇ ଡରାଏ । ଛୋପରାକଥା ତାକୁ ପ୍ରଭାବିତ କରି ପାରେନା ।

ଛୁଆଁଅଛୁଆଁ ଭେଦ କିମ୍ବା ଛୋଟବଡ଼ ବିଚାର ତା ମନରେ ନଥାଏ । ଛଅଦିନ ତଳେ ଘଟିଥିବା ଘଟଣା ବି ତା ମନକୁ ଆଚ୍ଛାଦିତ କରି ରଖିଥାଏ । ଛନ୍ଦାଛନ୍ଦି ହେଇଥିବା ମିଛକଥାକୁ ସେ ଛେଦି ପକାଇ ସେଥିରୁ ସତ୍ୟକୁ ବାଛି ଦେଇପାରେ । ଛାତ୍ରୀନିବାସ ଦାୟିତ୍ୱରେ ଥିବା ଛାୟାଦେବୀ ହାତରୁ ଛାଞ୍ଚୁଣିକୁ ଆଣି ଦୋଷୀକୁ ଆଚ୍ଛାକରି ପିଟେ । ଛି-ଛି, ଛତରଖାଇ ବୋଲି ଗାଳିଦିଏ । ଛମ୍‌ଛମ୍‌ହେଇ ସେ ଚାଲି ଯାଉଥିଲେ, ଛାୟାଦେବୀ ଛାନିଆଁ ହେଇଯାଏ । ଛାର ଝିଅଟାର ସାହସ ଦେଖି ସେ କହେ-"ଛବିରାଣୀ ହେଉଛି, ଛାତ୍ରୀନିବାସର ଛଇଳି ଛଟକି ଆମମାନଙ୍କର ପ୍ରିୟ ଛବିଦିଦି ।"

୦୦୦

# ଜଟାଧାରୀ ଜଟିଆବାବା

ଜଙ୍ଗଲ ଭିତରେ ଜଟାଧାରୀ ଜଟିଆବାବା ରହନ୍ତି । ଜୀବଜନ୍ତୁଙ୍କ ଘେରରେ ରହି ସେ ଜଟିଳ ଜୀବନ ବିତାନ୍ତି । ଜଗିବା ପାଇଁ ତାଙ୍କର କେହି ଜଣେ ବି ଜଗୁଆଳି ନ ଥାନ୍ତି । ଜନସମାଜଠାରୁ ସେ ଦୂରରେ ରହୁଥିବାରୁ ତାଙ୍କର ଜୀବନଶୈଳୀ ସଂପୂର୍ଣ୍ଣ ଭିନ୍ନଥିଲା । ଜଗନ୍ନାଥ ତାଙ୍କର ପିତା ଏବଂ ଜଗଦମ୍ବା ମାତା ଓ ରକ୍ଷାକାରୀ ଜଗୁଆଳି ବୋଲି ସେ ଭାବନ୍ତି । ଜୟ ଜଗନ୍ନାଥ, ଜୟ ଜଗଦମ୍ବା କହି ସେ ଜଙ୍ଗଲକୁ କମ୍ପାଇ ଦିଅନ୍ତି । ଜକାଜକିହେଇ ରହିଥିବା ଗଛସନ୍ଧିରେ ସେ ରାତିରେ ଜାକିଜୁକି ଶୋଇପଡ଼ନ୍ତି । ଜଗତର ମଙ୍ଗଳ ପାଇଁ ସେ ଯାଗଯଜ୍ଞ କରନ୍ତି ।

ଜଙ୍ଗଲର ଜଳବାୟୁ ସହିତ ସେ ଜଡ଼ିତ ହେଇଯାଇଥିବାରୁ ତାଙ୍କୁ ଜ୍ୱରବାଧିକା କିଛି ଯନ୍ତ୍ରଣା ଦେଇପାରେନାହିଁ । ଜାଡ଼ଦିନେ ସେ ଜୁଇ ଜାଳି ଜଗଜ୍ଜନନୀ ମାଆଙ୍କୁ ପୂଜା କରନ୍ତି । ଜହ୍ନ ଆଲୁଅରେ ବସି ଜପ କରନ୍ତି । ଜଣାଣ ଭଜନ ଗାଆନ୍ତି । ଜାୟା, ଜନକ-ଜନନୀ ଓ ଜନ୍ମଭୂମିକୁ ସେ ଜାଣି ମଧ୍ୟ ସେ ଅଜଣା ପରି ରହନ୍ତି । ଜୀତେନ୍ଦ୍ରିୟ ଜଟାଜୁଟଧାରୀ ଜଟିଆବାବା ଜଡ଼ବାଦଠାରୁ ଦୂରେଇ ରହିଥାଆନ୍ତି ।

ଜଗତଜଞ୍ଜାଳରୁ ମୁକ୍ତହୋଇ ସେ ଈଶ୍ୱରଙ୍କୁ ଖୋଜି ବୁଲୁଥାଆନ୍ତି । ଜୀବନକୁ ଜିତିବାକୁ ହେଲେ, ଜଠର ଜ୍ୱାଳାକୁ ଦମନ କରିବାକୁ ପଡ଼ିବ ବୋଲି କହନ୍ତି । ଜଙ୍ଗଲର ଫଳମୂଳ ଓ ଝରଣାର ଜଳ ଏଥିପାଇଁ ଏତିକି ଯଥେଷ୍ଟ । ଜୀବନଶୈଳୀକୁ ବଦଳାଇ ପାରିଲେ, ଜଣେ ମଣିଷ ଜିତେନ୍ଦ୍ରିୟ ହୋଇପାରିବ । ଜିଭକୁ ଯିଏ ଯେତେ ସଂଯମ କରିବ, ଜୀଇଁବା ତାର ସେତେ ସହଜ ହେବ ।

ଜଞ୍ଜିରରେ ବାନ୍ଧି କାହାକୁ ଜବରଦସ୍ତ ଜ୍ଞାନଦାନ କରିହେବନାହିଁ । ଜିଜ୍ଞାସୁ ମଣିଷ ସହଜରେ ଜ୍ଞାନ ଆହରଣ କରିପାରେ । ଜଗତପିତା ଜଗଦୀଶ ଆମକୁ ଜନ୍ମ ଦେଇଛନ୍ତି । ଜାତି, ଯୌତୁକ ଓ ଜାତକ ମଣିଷ ପରି ଶ୍ରେଷ୍ଠଜୀବକୁ କାବୁକରି ରଖିଛି । ଜୀବହତ୍ୟା ବଦଳରେ ସେ ଜୀବେଦୟା କଲେ, ଜୀବହିଂସା ଦୂର ହେଇପାରିବ ।



୦୦୦

# ଝଣ୍ଡାବାବାଙ୍କ ଝୁମ୍ପୁଡ଼ି

ଝାଡ଼ଖଣ୍ଡର ଝଟାଲଟା ଘେରା ଝାରକଟା ବଣରେ ଝଣ୍ଡାବାବା ରହନ୍ତି । ଝରଣାଟି ଝରଝରହେଇ ବହିଯାଉଛି । ଝାମ୍ପୁରା ବରଗଛ ମୂଳରେ ସେ ଝୁମ୍ପୁରି ତିଆରି କରିଛନ୍ତି । ଝାଟିମାଟିରେ ତିଆରି ଝୁମ୍ପୁଡ଼ିରେ ଝୋଟି ବି ପକେଇଛନ୍ତି । ଝଙ୍କଡ଼ର ସାରଳାଙ୍କୁ ସେ ସେଇଠି ପୂଜା କରନ୍ତି । ଝୁମ୍ପୁଡ଼ି ଭିତରେ ତାଙ୍କର ସଂପତ୍ତି ବୋଲି ଗୋଟାଏ ବଡ଼ଝୁଡ଼ି, ଝାଡୁ ଦୁଇଟା, ଝୁଣାଦିଆ ଝିଙ୍କର ଖଣ୍ଡିଏ, ଝାଞ୍ଜ ହଳେ, ଝୁମୁକା ଗୋଟାଏ ରହିଛି । ଝରକଲମଟିକୁ ସେ ଠଣାରେ ସାଇତି ରଖିଛନ୍ତି ।

ଝରକାଟି ତାଙ୍କର ସବୁବେଳେ ଖୋଲାଥାଏ । ଝିଙ୍କାରିମାନଙ୍କ ଝିଁ-ଝିଁ ଶବ୍ଦରେ କାନ ଝିମ୍‌ଝିମ୍ ହେଇଯାଏ । ଝଡ଼ ବର୍ଷା କିମ୍ବା ଝାଞ୍ଜି ପବନକୁ ଝଣ୍ଡାବାବାଙ୍କର ଖାତିରି ନ ଥାଏ । ଝଙ୍କାଳିଆ ବୁଦାମୂଳେ ଦୁଇଟା ଝିଙ୍କ ଲୁଚିରହି ବାବାଙ୍କୁ ଦେଖନ୍ତି । ଝଞ୍ଝଟ କିଛି କେବେ କରନ୍ତି ନାହିଁ ।

ଝାଡ଼ବଣରେ ଥିବା ଜୀବଜନ୍ତୁଙ୍କୁ ଝଣ୍ଡାବାବା ନିଜର ପୁଅଝିଅ ମନେକରନ୍ତି । ଝଡ଼ିପୋକଠାରୁ ଝିଟିପିଟିଯାଏ, ଝିଣ୍ଟିକାଠାରୁ ଝିଙ୍କାରୀ ପତଙ୍ଗ ପର୍ଯ୍ୟନ୍ତ ସମସ୍ତଙ୍କୁ ସେ ଦୟା କରନ୍ତି ।

ଝଙ୍କଡ଼ର ସାରଳାଙ୍କ ଆଗରେ ଝାଞ୍ଜ ବଜେଇ ନାଚନ୍ତି । ଝୁମୁକା ବଜେଇ ଗୀତ ଗାଆନ୍ତି । ଝାମୁଯାତ୍ରା ଆସିଲେ, ଝିଙ୍କରରେ ଝୁଣାଧୂଆଁ ମାଆଙ୍କ ପାଖରେ ଦିଅନ୍ତି । ଝୁଣାଧୂଆଁରେ ସମଗ୍ର ଝାଡ଼ଟା ସୁଗନ୍ଧିତ ହେଇଯାଏ । ଝାଡୁଦେଇ ସେ ଝୁମ୍ପୁଡ଼ି ଚାରିପାଖକୁ ସଫାସୁତର କରନ୍ତି । ଝାଟେଇ ସାରିଲେ, ସେ ଝାଟୁଆକୁ ନେଇ ଝରଣାଠାରୁ ଦୂରରେ ପକାନ୍ତି । ଝରଣାର ସଫାଜଳ ପିଅନ୍ତି । ଝଡ଼ିପଡ଼ିଥିବା ଝାଡ଼ର ଫଳମୂଳ ତାଙ୍କର ଖାଦ୍ୟ ହେଇଯାଏ ।

ଝରଣାର ଝର୍ଝର ଶବ୍ଦ ତାଙ୍କମନରେ ଝଙ୍କାର ତୋଳେ । ଝଣ୍ଡାବାବା ସେଇ ତାଳରେ ଝୁମିଝୁମି ନାଚି ଆନନ୍ଦ ପାଆନ୍ତି ।

ଝଗଡ଼ା ଲାଗୁଥିବା ଜୀବଜନ୍ତୁଙ୍କ ପାଖକୁ ଝପଟିଯାଇ କଳି ତୁଟାନ୍ତି । ଝୁଣିଦେଉଥିବା ଦୁଷ୍ଟଜୀବକୁ ଧରି ଝଞ୍ଜିରରେ ବାନ୍ଧି ରଖନ୍ତି । ଝୁଲାରେ ଝୁଲୁଥିବା ଚେରମୂଳି ଔଷଧଦେଇ ସୁସ୍ଥ କରନ୍ତି । ଝୁଣାଖାଇ ଝୋଲା ମାରୁଥିବା ଜୀବକୁ ନେଇ ଝଟତିକରି ଝୁଡ଼ିରେ ଘୋଡ଼େଇ ରଖନ୍ତି । ଝମେଲା ତୁଟିଲେ, ଝରକାବାଟେ ତାକୁ ଛାଡ଼ି ଦିଅନ୍ତି ।

୦୦୦

# ଟୁଇଁଅପା ପୁଅ ଟିଆଁ

ଟୁଇଁଅପା ପୁଅ ଟିଆଁର ଭଲନାଆଁ ହେଉଛି-ଟଙ୍କଧର । ଟାଙ୍ଗିଣିଗୁଡ଼ାରେ ଟିକାଦାର ଚାକିରି ପାଇଥିଲା । ଟିକାଦିଆ କାମକୁ ଛାଡ଼ି ସେ ଏବେ ଟାଉଟରୀ କରୁଛି ।

ଟୋକା ବୟସରେ ଟେରିଭାଙ୍ଗି ସେ ଟହଲ ମାରୁଥିଲା । ଟିମାବାବା ଟୁଙ୍ଗୀର ଟିଉସନ କରି ଗଞ୍ଜେଇ ଟାଣୁଥିଲା । ଟୁଣୁକା ଟୁଣକି ଔଷଧ ଦିଆନିଆ ଶିଖିଯାଇଥିଲା । ଟେଳାଏଲେଖାଁ ଅଫିମଖାଇ ଟଳଟଳହେଇ ସେ ଘରକୁ ଫେରେ । ଟିଆଁ କେଉଁଠି ଥାଇ କଣକରେ ତାର ଟେର କେହି ପାଉ ନ ଥିଲେ ।

ଟିଆଁ ଏବେ ଟଙ୍କଧରବାବୁ ହେଇଯାଇଛି ସିନା କିନ୍ତୁ ତାର ଟକଳା ପ୍ରକୃତି ଛାଡ଼ ଯାଇନାହିଁ କି, ଟାଉକା ଗୁଣକୁ ସେ ଛାଡ଼ିନାହିଁ । ଟିକେ ହୁସିଆର ନ ହେଲେ, ଘରୁ କଣ ବୋଲି କଣ ଜିନିଷ ଟେକି ନେଇଯିବ । ଟିପାଖାତାରୁ ଦେଖି କେତେକଣ ବୁଝେଇବ ଯେ, ଜଣାଶୁଣା ଟାଣୁଆଲୋକ ବି ତା ପାଲରେ ପଡ଼ିଯିବେ । ଟାହିଟାପରା କରୁକରୁ ସେ ଆମ୍ଭକୁ ଖାଇ ଟାକୁଆ ଧରେଇ ଦେଇଯିବା ଲୋକ । ଟେକାଟେକି କଥାକହି ତମକୁ ନେଇ ଆକାଶରେ ଟାଙ୍ଗିଦେବ । ଟିଙ୍କପରି ଲାଗିଥିବ ଯେ, ଟଙ୍କାପଇସା ସହିତ ଜୀବନକୁ ବି ଶୋଷିନେବ । ଟେରାହେଇ ତମେ ତାକୁ ଚାହିଁରହିଥିବ ।



ଟିଆଁ ଓରଫ ଟଙ୍କଧର ଏବେ ସକାଳୁ ସକାଳୁ ଟସର କପଡ଼ାରେ ତିଆରି ଧୋତି ପଞ୍ଜାବି ପିନ୍ଧି କଚେରୀ ପାଖରେ ଟହଲମାରେ । ଟିପେଇ ଟିପେଇ ଚାଲୁଚାଲୁ, ଟାକି ରହିଥିବା ଶିକାରକୁ ଟପ୍‌କରି ମାଡ଼ିବସେ । ଟୋପିଟାକୁ ମଝିରେ ମଝିରେ ଟେକିଦେଇ ତାର ଟାଙ୍ଗରା ମୁଣ୍ଡକୁ ଦେଖାଇଦିଏ । ଟାଆଁସିଆ ହାତକୁ ସେ ଯାହା ମୁଣ୍ଡରେ ବୁଲେଇ ଆଣିବ, ଟାଙ୍ଗରାରୁ ହାଣ୍ଡି ତାର ଗଡ଼ିଗଲା ଜାଣ । ଟିକେ ସୁବିଧା ପାଇଲେ ଟିଆଁକହେ- "ଟାଣୁଆଁ ଟାଣୁଆଁ ନେତାମାନେ ମୋ ହାତରେ ଅଛନ୍ତି । ଟାଉନରେ ଥିବା ସବୁ ଟାଇଲ ଘର, ଟିଣ ଛପର ଘରକୁ ମୁଁ ପକ୍କା । ଘର କରାଇଦେବି ।"



ଟୁପୁରୁ ଟାପୁରୁ ହେଇ ଗାଆଁଲୋକେ କହନ୍ତି-"ଟିଆଁଟା ଗୋଟାଏ ଠକ-ଟାଉଟର ।"

୦୦୦

# ଠାପୁଆର ଠାକୁରାଣୀ

ଠାପୁଆ ଜଣକ ଠିକାଦାରକୁ ଠକାଠକି କରି ଶେଷରେ ଠୋକର ଖାଇଲା । ଠିକେଠିକେ କହିଲେ-ଠାପୁଆଟା ବଡ଼ ଠକ । ଠିକଣା ଜାଗାରେ ଆଣ୍ଠେଇ ପଡ଼େ । ଠେଙ୍ଗୁଣି ଛିଡ଼ିଯାଏ । ଠାକୁର, ଠାକୁରାଣୀଙ୍କୁ ମଧ୍ୟ ସେ ଠକିଦେବାକୁ ପଛାଏ ନାହିଁ । ଠେକିଏ ଖିରି ପିଇଦିଏ । ଠାପୁଆର ଥରେ ପେଟ କାଟିଲା । ଠୁଣୁଠୁଣୁକିଆ ଔଷଧ ଖାଇ ବିଫଳ ହେଇଥିଲା । ଠାକୁରାଣୀ ମନ୍ଦିରକୁ ଯାଇ ଠଂ-ଠଂ କରି ଘଣ୍ଟି ବଜେଇଲା । ଠେକା ମୁଣ୍ଡରୁ ଓହ୍ଲାଇ ଠିଆହେଇ କହିଲା-"ଠାକୁରାଣୀ ମାଆ ! ଠଣାରେ ତୋ ପାଇଁ ଆଠଣା ପଇସା ରଖିଛି । ଠଣଠଣ କରି ତୋତେ ଗଣିଦେବି । ଠିକ୍ ହେଇଗଲେ, ମୁଁ ଠିକାଦାର ପାଖକୁ ଯାଇ କାମ କରିବି । ଠେକୁଆଟିଏ ଆଣି ତୋ ଆଗରେ ବଳିଦେବି ।"

ଠାକୁରାଣୀଙ୍କ ଦୟାରୁ ଠାପୁଆର ପେଟ ଠିକ୍ ହେଇଗଲା । ଠେକୁଆ ଦେବାକଥା ମନେପଡ଼ିବାରୁ ସେ ଭାବିଲା- ଠାକୁରାଣୀ ତ କେତେକାମରେ ବ୍ୟସ୍ତ ରହୁଥିବେ, ଠେକୁଆ କଥାକୁ ସେ ନିଶ୍ଚୟ ଭୁଲି ଯାଇଥିବେ ।

ଠିକ୍ ଆଠଦିନପରେ ପୁଣି ଠାପୁଆର ପେଟ କାଟିଲା । ଠାକୁରାଣୀଙ୍କୁ ମନେପକାଇ ସେ ଠଣାରୁ ଆଠଣା ପଇସା ଧରି ମନ୍ଦିରରେ ପହଞ୍ଚି କହିଲା- "ଠକିଦେଲି ବୋଲି ଭାବୁଛୁ କି ମାଆ ! ଠଣାରୁ ପଇସା ଆଣିଛି ନେ । ଠେକୁଆ କଥାଟା ମୁଁ ମନେରଖିଛି । ଠୁରାଗାଈକୁ ବିକିଦେଲେ, ଠେକୁଆଟି କିଣିଆଣି ତୋତେ ଦେଇଦେବି । ଠେଙ୍ଗଜମି ଖଣ୍ଡେ ଥିଲା, ଠିକାଦାର ତାକୁ ତ ନେଇଗଲା । ଠକିବି ନାହିଁ ମାଆ ଲୋ ତୋତେ ମୋଟେ ଠକିବି ନାହିଁ ।"

ଠାକୁରାଣୀ ପୁଣି ଦୟାକଲେ । ଠାପୁଆର ପେଟଦରଜ ଭଲ ହେଇଗଲା । ଠିକାଦାର ପାଖକୁ ଯାଉଥିବା ବାଟରେ ପୁଣି ତା ପେଟ କାଟିଲା । ଠିଆହେଇ ପାରିଲା ନାହିଁ । ଠେଲିପେଲି ଘୋଷାଡ଼ିହେଇ ଠିକଣା ଜାଗାରେ ପହଞ୍ଚିଗଲା । ଠାକୁରାଣୀଙ୍କ ଆଗରେ ଆଣ୍ଠେଇ ପଡ଼ି କହିଲା- "ଠେକୁଆ ତ ଏବେ ଦେଇପାରିବି ନାହିଁ ମାଆ । ଠାପୁଆକୁ ତୁ ହିଁ ଠକ କରିଛୁ । ଠେକୁଆଟିଏ ବଣରୁ ଧରିଆଣି ଖାଇଦେ । ଠକିବୁ ନାହିଁ, ଠିକ୍ କରିଦେବୁ ମୋ ପେଟକୁ ।"

ooo

# ଡମପଡ଼ାର ଡମ୍ବରୁ

ଡମପଡ଼ା ଗାଆଁରେ ଡମ୍ବରୁ ଡାକୁଆର ଘର । ଡାମରାକାଉ ପରି ଦେଖିବାକୁ କଳା । ଡେକ୍‌ଚି ପରି ତାର ପେଟ । ଡାହୁକ ପରି ଆଖି ଯୋଡ଼ାକ ଲାଲ । ଡେଙ୍ଗା ପୁଣି ମୋଟା ହେଲେ ବି ସେ ଭାରି ଡରୁଆ । ଡାହାଣୀ, ଡାକିନୀଙ୍କୁ ତାର ଭାରିଡର । ଡେବିରି ହାତରେ ସେ ଡେଉଁରୁଆ ପିନ୍ଧିଛି । ଡୋରିରେ ତନ୍ତ୍ର ମନ୍ତ୍ର ହେଇଥିବା କାଗଜ ବାନ୍ଧି ପିନ୍ଧିଛି । ଡିବାରେ ଡମୁଣୀଦେବୀଙ୍କ ସିନ୍ଦୂର ରଖି ଅଣ୍ଟାରେ ଖୋଷିଛି ।

ଡିମିରିଗଛ ଡାଳରେ ଡାହାଣୀମାନେ ବସନ୍ତି, ଡିଆଁମାରି ଖେଳନ୍ତି ବୋଲି ଡମ୍ବରୁ କହେ । ଡିହ ଉପରେ ଥିବା ଡିମିରିଗଛ ଆଡ଼କୁ ସେଥିପାଇଁ କାନ ଡେରିଥାଏ । ଡିମାଡିମା ଆଖି କାଢ଼ି ଗଛର ଡାଳପତ୍ରକୁ ଚାହେଁ । ଡିବିରି ନେଇ ସଞ୍ଜବେଳେ ଏଣିକି ତେଣିକି ବୁଲେ । ଡେମ୍ଫରୁ ପତ୍ର ପଡ଼ିଗଲେ, ଡାହାଣୀ ଡେଇଁଲା ବୋଲି ଭାବି ଡରେ । ଡକାୟତ କି ଡାକୁକଥା ଶୁଣିଲେ, ଡୋଳା ତାର ଓଲଟି ପଡ଼େ । ଡଙ୍ଗାରେ ବସିଲେ କାଳେ ବୁଡ଼ିଯିବ, ଗାଡ଼ିରୁ କାଳେ ପଡ଼ିଯିବ, ତେଣୁ ସେ ଡଙ୍ଗାରେ କି ଗାଡ଼ିରେ ବସେନାହିଁ ।

ଡାକ୍ତରଖାନା କଥା ଶୁଣିଲେ, ଭିଡିମୋଡ଼ି ହେଇକହେ-"ଡାକ୍ତର ଆଖି ତାଡ଼ି ନେଇଯିବେ । ଡାଳିମ୍ବ କଷି ଖାଇଲେ ମୋ ଦେହ ଭଲ ହେଇଯିବ ।"

ଡମ୍ବରୁ ଗାଆଁରୁ ଯାଇ ଡଗର କାମକରେ । ଡେଙ୍ଗୁରା ବଜେଇ ଲୋକମାନଙ୍କୁ ଡକାହକା କରି ଡାକବଙ୍ଗଳାକୁ ଆଣେ । ଡଗଡଗହେଇ ଚାଲେ । ଡେଇଁଡେଇଁ ଡେଙ୍ଗୁରା ପିଟେ ।

ଡରକୁଳା ଡମ୍ବରୁକୁ ଡହରା ପିଲାମାନେ ଡରେଇ ଡରେଇ ମଜା ନିଅନ୍ତି । ଡୁମା ଡୁମା ଡାକି ତାକୁ ଚିଡ଼ାନ୍ତି । ଡିମିରିଗଛର ଡାଙ୍ଗ ଦେଖେଇଲେ, ଡହଳବିକଳହେଇ ଡମ୍ବରୁ ଦୌଡ଼ି ପଳାଏ ।



୦୦୦

# ଡାମଣାହାଣ୍ଡିର ଢେମସା ନାଚ

ଡାମଣାହାଣ୍ଡି ହେଉଛି-ନବରଙ୍ଗପୁର ଜିଲ୍ଲାର ଗୋଟାଏ ଛୋଟ ସହର । ଢେମସା ନାଚରେ ଆଦିବାସୀମାନେ ଡମଣାହାଣ୍ଡିକୁ ଥରେଇ ଦିଅନ୍ତି । ଢୋଲର ଡାଉଁଡାଉଁ ଶବ୍ଦ ଶୁଣିଲେ, ଧାଙ୍ଗଡ଼ା ଧାଙ୍ଗଡ଼ିମାନେ ଢେରରାତି ପର୍ଯ୍ୟନ୍ତ ନାଚନ୍ତି । ଢୋଲିଆମାନେ ବି ତାଙ୍କ ସହିତ ନାଚନ୍ତି । ଡଗଡମାଳି ମାଧ୍ୟମରେ ଧାଙ୍ଗଡ଼ା ଧାଙ୍ଗଡ଼ି ଗୀତ ଗାଆନ୍ତି । ଢେଉଢେଉକା ନାଚକରି ଧରାଧରିହେଇ ଡମଣାପରି ବଙ୍କେଇ ବଙ୍କେଇ ଚାଲନ୍ତି । ଢଳିଢଳି ସେମାନେ ପାଦରେ ପାଦକୁ ମିଳାନ୍ତି । ଡାଲୁଜାଗା ଦେଖି ଦର୍ଶକମାନେ ବସି ଢଗରେ ଥିବା ରସକୁ ଉପଭୋଗ କରନ୍ତି । ଝୁ-ଝୁ ବର୍ଷାହେଉ କି ଢୋ-ଢା-କରି ଘଡ଼ଘଡ଼ି-ଚଡ଼ଚଡ଼ିହେଉ, ନାଚ ବନ୍ଦହୁଏ ନାହିଁ ।

ଢିଲା ପୋଷାକ ପିନ୍ଧି ଧାଙ୍ଗିଡ଼ିମାନେ ଡାଉରଙ୍ଗର ଗାମୁଛାକୁ ବେକରେ ପକାଇ ସରିଗଲାରେ-- ସରିଗଲାରେ ସ୍ୱର ଲମ୍ବେଇଥାନ୍ତି । ଢିମା ପଡ଼ିଥିବା ପଥୁରିଆ ଜାଗାରେ ମଧ୍ୟ ସେମାନେ ମଜାରେ ନାଚି ପାରନ୍ତି । ଢଙ୍କାହେଇ ରହିଥିବା ଡାଳ ଉପରୁ ଡାଙ୍କୁଣୀ ଖୋଲି ସମସ୍ତେ ଢୋକେଲେଖାଁ ସଲପରସ ପିଅନ୍ତି । ଡାବାରୁ ମାାଗଣାରେ ଖିଆପିଆ କରନ୍ତି ।

ଢଙ୍ଗଢାଙ୍ଗ ନ ଥିବା ମାତାଲ କେତେଟା ଗଛକୁ ଢିରାଦେଇ ଢୁଳାନ୍ତି । ଢକାରମାରି ବାନ୍ତିକରି ଢିଲାହେଇ ଯାଆନ୍ତି ।

ଢୋକେପିଇ ଦଣ୍ଡେ ଜୀଇଁବା ମଣିଷ ପାଇଁ ଢେମସାନାଚ ଢେର ଆନନ୍ଦ ଦେଇଥାଏ ।

୦୦୦

# ତାପସ ଓ ତଥାଗତ

ତଥାଗତର ବଡ଼ଭାଇ ହେଉଛି ତାପସ । ତାପସ ତାର ତୀକ୍ଷ୍ଣଦୃଷ୍ଟି ବଳରେ ତିରିଶ ଫୁଟ ଦୂରରୁ ଲକ୍ଷ୍ୟଭେଦ କରିପାରେ । ତିଳ ପ୍ରମାଣ ଜିନିଷକୁ ମଧ୍ୟ ସେ ଦେଖିପାରେ । ତୀଖରେ ବସିଥିବା ପକ୍ଷୀକୁ ସେ ତୀରମାରି ତଳେ ପକାଇଦିଏ । ତୂଣୀରେ ତୀରଥିଲେ ସେ କାହାରିକୁ ତିଳେମାତ୍ର ଭୟ କରେନାହିଁ । ତିନିପୁରୁଷରେ ତାଙ୍କର ଏମିତି ତୀରନ୍ଦାଜ କେହି ନ ଥିଲେ । ତେଣୁ ତା ମନରେ ଗର୍ବ ଥାଏ । ତାରାମାନଙ୍କୁ ଦିନେ ତୀର ମାରି ତଳକୁ ଖସେଇ ଦେଇ ମଥାରେ ବିଜୟ ତିଳକ ଲଗାଇବି ବୋଲି କହେ । ତରୁଣ ବୟସରୁ ସେ କେତେ ଚଢ଼େଇ ମାରି ତରକାରୀ କରି ଖାଇଲାଣି, ତାର ହିସାବ ନାହିଁ । ତଥାପି ତା ମନକୁ ପାପଛୁଇଁ ପାରୁନାହିଁ ।

ତାପସଠୁଁ ସାନ ତଥାଗତ । ତୀକ୍ଷ୍ଣବୁଦ୍ଧି ଥିବାରୁ ସେ ତୁଚ୍ଛାକଥାକୁ ତର୍ଜମା କରେନାହିଁ । ତାମସିକ ପଦାର୍ଥ ପ୍ରତି ତାର ଆଗ୍ରହ ନ ଥିଲା । ତତ୍ତ୍ୱଜ୍ଞାନ ସନ୍ଧାନରେ ସେ ତନ୍ମୟହେଇ ରହୁଥାଏ । ତିଥିବାର ଦେଖି ସେ ଦିନେ ଗୃହତ୍ୟାଗ କଲା । ତୀର୍ଥଯାତ୍ରା ଶେଷରେ ସେ ତମସାନଦୀ କୂଳରେ ଥିବା ତପୋବନରେ ପହଞ୍ଚିଲା । ତମ୍ବାପାତ୍ରରେ ଜଳରଖି ତୃଷା ମେଣ୍ଟାଇଲା । ତରୁଲତାରୁ ଫଳମୂଳ ଆଣି ଭୋଜନ କଲା । ତିର୍ଯ୍ୟକ ସୂର୍ଯ୍ୟ କିରଣରୁ ତାପ ପାଇଲା । ତୁଟୁକା ତୁଟୁକି ଔଷଧ ତା ପାଖରେ ରଖିଥିଲା । ତୃଣଭୋଜି ଜୀବମାନଙ୍କ ସହିତ ସେ ପରିଚିତ ହେଇଗଲା । ତୃପ୍ତମନରେ ସେ ତପସ୍ୟାରେ ବସିଗଲା ।

ତୀବ୍ରଗତିରେ ତାର ତପସ୍ୟା ଚାଲିବାରୁ ଜଣେ ତତ୍ତ୍ୱଦର୍ଶୀ ଆସି ତାକୁ ଦେଖାକଲେ । ତାକୁ ସେ ତର୍କଶାସ୍ତ୍ର, ତତ୍ତ୍ୱଜ୍ଞାନ ଶିକ୍ଷାଦାନ କଲେ । ତେଜଦୀପ୍ତହେଇ ସେ ଏବେ ଜୀବଜନ୍ତୁମାନଙ୍କର ତ୍ରାଣକର୍ତ୍ତା ହେଇଛନ୍ତି ।

୦୦୦



# ଥାନାବାବୁଙ୍କ ଥିଏଟର

ଥରେ ଥାନାବାବୁ ଥିଏଟର ଦେଖିବାକୁ ଯାଇଥିଲେ । ଥଣ୍ଡାଦିନ ହେଇଥିବାରୁ ସେ ଥୁରୁଥୁରୁହେଇ ଥରୁଥିଲେ । ଥନ୍ତଲ ପେଟକୁ ସେ ଥାପୁଡ଼େଇ ଥାପୁଡ଼େଇ ଗରମ କରୁଥିଲେ । ଥରକୁଥର ପେଟକୁ ଥାପୁଡ଼େଇବାରୁ ଥାନାରେ ବସିଥିବା ଥୋକାଏ ଟୋକା ହସି ଉଠିଲେ । ଥାନାବାବୁ ଥୟ ଧରି ରହିପାରିଲେ ନାହିଁ ।



ଥାକୁଲୁ ଥୁକୁଲୁ ଦିଶୁଥିବା ଟୋକା ଥବୀର କହିଦେଲା- "ଥାନାବାବୁଙ୍କୁ ଥଣ୍ଡାରୋଗ ହେଇଚି । ଥଳିରେ ଥୋଡ଼ାଏ ଖଣ୍ଡ ବରଫ ଆଣି ତାଙ୍କ ମଥାରେ ଥୋଇଦେଲେ ଭଲହେଇଯିବ ।"

ଥାନାବାବୁ ତା କଥାଶୁଣି ରାଗରେ ଥରି ଉଠିଲେ । ଥାନ ଅଥାନ ନ ବୁଝି ତା ଗାଲରେ ଥାପଡ଼େ କଷିଦେଲେ ।

ଥୋଡ଼ି ଫାଟିଯିବାରୁ ଟୋକାର ଥଟଲୀ ଏକବାରେ ଛାଡ଼ିଗଲା । ଥପ୍‌ଥପ୍ କରି ରକ୍ତବୋହି ପଡ଼ିଲା । ଥଙ୍ଗଥଙ୍ଗହେଇ ସେ କହିଲା-" ଥିରକରି ମୋତେ ଥିଏଟର ହଲରୁ ବାହାରକୁ ନେଇଚାଲ । ଥଟ୍ଟା ମଜାକି କରି ଥାପଡ଼ ଖାଇଲି । ଥକ୍କା ଲାଗୁଛି ମୋତେ । ଥଳିରୁ ବରଫ ଆଣି ମୋ ମଥାରେ ଟିକେ ଥାପିଦିଅ ।"

ଥାପଡ଼େ ମାରି ଥାନାବାବୁଙ୍କ ଥଣ୍ଡା ବି ଛାଡ଼ି ଯାଇଥିଲା । ଥିଏଟର ହଲ ଛାଡ଼ି ମିଠା ଦୋକାନକୁ ଯାଇ ଥୋଡ଼ାଏ ମିଠା ଥାଳିରେ ଆଣିଲେ । ଥାକୁଲ ଥୁକୁଲ ଦିଶୁଥିବା ଟୋକା ଥବୀର ଆଗରେ ଥୋଇଦେଲେ । ଥୋବରା ମୁହଁରେ କହିଲେ-"ଥଣ୍ଡାମିଞ୍ଜାସରେ ଥାଇ ମୁଁ ଥାପଡ଼ ମାରିନାହିଁ । ଥରେ ମୋତେ କ୍ଷମା କରିଦିଅ । ଥାଉ ସେ ପଛକଥା । ଥାଳିରୁ ତମେ ମିଠାନେଇ ଖାଇଲେ ଯାଇ ମୁଁ ଥାନାକୁ ଫେରିବି ।"

୦୦୦

# ଦଗାଦିଆ ଦେବର୍ଷି

ଦେବର୍ଷି ନାରଦ ଦେବତାମାନଙ୍କର ଏକମାତ୍ର ଦକ୍ଷ ଦୂତ ଥିଲେ । ଦୈନିକ ସେ ଦେବରାଜଙ୍କ ଦରବାରଠାରୁ ଦୁନିଆର ଦୀନହୀନ ମଣିଷ ପର୍ଯ୍ୟନ୍ତ ଭ୍ରମଣ କରନ୍ତି । ଦୟାମୟ ନାରାୟଣଙ୍କ ନାମକୁ ସେ ଦିନରାତି ଜପୁଥାନ୍ତି । ଦୁଃସାହସ କରି ସେ ସବୁବେଳେ ସତକଥା କହନ୍ତି । ଦେବତାମାନଙ୍କ ମଧ୍ୟରେ ଲଢ଼େଇ ଝଗଡ଼ା ଲଗେଇ ଦିଅନ୍ତି । ଦୁଃଖୀଲୋକଙ୍କ ପାଖରେ ଦୁଃସମୟରେ ପହଞ୍ଚିଯାଆନ୍ତି । ଦୁରାତ୍ମା, ଦୁରାଚାରୀ ଦାନବଙ୍କୁ ଦୁନିଆରୁ ଦୂରେଇଦେଇ ସେ ଦୁର୍ଗତମାନଙ୍କୁ ରକ୍ଷାକରନ୍ତି ।

ଦ୍ୱାପର ଯୁଗରେ ଦୁର୍ଯ୍ୟୋଧନ ଓ ଦୁଃଶାସନଙ୍କର ଦାମ୍ଭିକକୁ ଭାଙ୍ଗିବାର ଉପାୟ ବାହାର କରିଥିଲେ । ଦ୍ୱନ୍ଦ୍ୱ ସୃଷ୍ଟିକରି ସେ କଂସକୁ ବଧ କରାଇଥିଲେ । ଦ୍ରୌପଦୀଙ୍କ ଦୟନୀୟ ଅବସ୍ଥାକୁ ଦେଖି ସେ ଦୟାସାଗର ଦାମୋଦରଙ୍କୁ ଜଣାଇଥିଲେ ।

ଦଶଭୂଜା ଦୁର୍ଗାଙ୍କୁ ଦେବତାମାନଙ୍କର ଅସ୍ତ୍ର ଦିଆଇଥିଲେ । ଦୁବକୁ ଦାରୁ କରିବାରେ ଦେବର୍ଷି ସିଦ୍ଧହସ୍ତ ଥିଲେ । ଦଶଦିଗରୁ ସେ ବାର୍ତ୍ତା ଆଣି ନାରାୟଣଙ୍କୁ ଦେଉଥିଲେ । ଦିବ୍ୟଚକ୍ଷୁ ଓ ଦିବ୍ୟଜ୍ଞାନଦ୍ୱାରା ସେ ଚଉଦଭୁବନର କଥା ଜାଣି ପାରୁଥିଲେ । ଦେବସଭାରେ ଉପସ୍ଥିତ ହେଲେ ତାଙ୍କୁ ଦେବତାମାନେ ଆଦର କରନ୍ତି । ଦଣ୍ଡାୟମାନ ହେଇ ଦଣ୍ଡବତକରି ଦଶଦିଗର ଖବର ବୁଝନ୍ତି । ଦିଗ୍‌ଦର୍ଶନଦେଇ ସେ ଦେବତାମାନଙ୍କୁ ଦୟା କରନ୍ତି ।

ଦେବଦେବ ମହାଦେବଙ୍କୁ ସେ ସଚେତନ କରାଇ ଦିଅନ୍ତି । ଦୁଃସାଧ୍ୟ କାର୍ଯ୍ୟ ତାଙ୍କ ଦ୍ୱାରା ସମ୍ଭବ ହୋଇଥାଏ ।

ଦଗାବାଜ, ଦଗାଦିଆ ବୋଲି ଦେବର୍ଷିଙ୍କୁ ଦାନବମାନେ କହନ୍ତି । ଦାଉ ସାଧିବା ପାଇଁ କିଏ କେତେ କଥାକହି ଦେବର୍ଷି ନାରଦଙ୍କୁ ଦୋଷଦେଇ ଦାୟୀ କରନ୍ତି । ଦୁର୍ନାମ କି ସୁନାମକୁ ତାଙ୍କର ବୋଲି ସେ କେବେ ଦାବି କରନ୍ତି ନାହିଁ ।

୦.୦.୦



# ଧନୀପୁରର ଧଡ଼ିଆ

ଧୋଇଆ ଅଞ୍ଚଳରେ ଧନୀପୁର ଗାଆଁ । ଧନଞ୍ଜୟ ଜଣେ ଧୂରନ୍ଦର ଧାନଚାଷୀ ସେ ଗାଆଁରେ ରହୁଥିଲେ । ଧୋଇ ମରୁଡ଼ି ହେଲେ ସେ ଧନିଆ ଚାଷ କରନ୍ତି । ଧୈର୍ଯ୍ୟ ନ ହରାଇ ସେ ଧୂମ୍ ଖଟନ୍ତି । ଧୀରେଧୀରେ ଧନଞ୍ଜୟଙ୍କର ବୟସ ବଢ଼ିଲା । ଧିମା ହେଇଗଲା ତାଙ୍କର କାମ । ଧନ ଦଉଲତ ସରିଆସିଲା ।

ଧନେଶ୍ୱର ତାଙ୍କର ଏକମାତ୍ର ପୁଅ । ଧଣ୍ଡପରି ଏଣେତେଣେ ବୁଲେ । ଧରାବନ୍ଧା କୌଣସି ଧନ୍ଦାରେ ମନ ଦିଏନାହିଁ । ଧାର ଉଧାର କରି ମଜା ମଉଜରେ ମାତେ । ଧାର ଦେଇଥିବା ଲୋକେ ତାକୁ ଧଡ଼ିଆ ନାଆଁ ଦେଇଥିଲେ । ଧୋକା ଦେବାରୁ ସେମାନେ ଧଡ଼ିଆକୁ ଧରି ଧୂମ୍ ଧୂଲେଇ କଲେ । ଧର୍ମଛଡ଼ା ହେଇ ସେ ଅଧରାତିରେ କୁଆଡ଼େ ପଳାଇଲା । ଧନଞ୍ଜୟ ତାକୁ ଧିକ୍କାରକରି ଧାନଜମିକୁ ବିକ୍ରିକରି ଧାର ଉଧାର ଶୁଝିଲେ ।

ଧାଉଁଆହେଇ ଧଡ଼ିଆ ଯାଇ ଧାନଗଦିରେ ପହଞ୍ଚିଲା । ଧନ ରୋଜଗାର ପାଇଁ କାମ ଖୋଜିଲା । ଧର୍ମଶାଳାରେ ରହି ଅଧା ଉପାସରେ ପଡ଼ିରହିଲା । ଧାଁ-ଧପଡ଼ କରିକରି ସେ ଧିମେଇ ପଡ଼ିଥିଲା । ଧନୀଲୋକ ଜଣେ ଧଡ଼ିଆର ଧେଡ଼ିଆ ଚେହେରା ଆଉ ଧୋତରା ପୋଷାକ ଦେଖି ଦୟାକଲେ । ଧରାଧରି କରି ସେ ତାକୁ ଖଣ୍ଡେ ଧାଉଡ଼ିଆ ଚାକିରି କରେଇଦେଲେ ।

ଧପ୍ପାବାଜ ଧଡ଼ିଆର ଧନଲୋଭ ଥିଲା । ଧୀରେଧୀରେ ସେ ଧୂର୍ତ୍ତ ହେଇଗଲା । ଧର୍ମଛଡ଼ାହେଇ ସେ ଦିନେ ମାଲିକ ଆଖିରେ ଧୂଳି ଦେଇଦେଲା । ଧର୍ମପ୍ରାଣ ଧନୀ ମାଲିକ ଧ୍ୟାନରେ ବସିଥିବା ବେଳେ ସେ ଘରେ ଲଙ୍କାଧୂଆଁଦେଇ ଧଡ଼ପଡ଼ହେଇ ଖସିଗଲା । ଧାନଭର୍ତ୍ତି ମୁଣାକୁ ଧରି ଧାଇଁଲା । ଧରା ପଡ଼ିଯିବା ଭୟରେ ସେ ଧଇଁସଇଁ ହେଇ ଧାଉଁଥିବାବେଳେ ଗୋଟାଏ ଗାଡ଼ିର ଧକ୍କାରେ ତଳେ ପଡ଼ିଗଲା । ଧଡ଼କରି ଲୋକେ ତାକୁ ଧରି ଥାନାବାବୁଙ୍କୁ ଧରେଇଦେଲେ ।

ଧୂର୍ତ୍ତ, ଧପ୍ପାବାଜ ଧଡ଼ିଆର ବୁଦ୍ଧି ହଜିଗଲା ।

୦୦୦

# ନୋଳିଆସାହିର ନଟିଆ

ନଈକୂଳିଆ ନୋଳିଆସାହିରେ ନାଉରିଆ ନଟିଆର ଘର । ନକିଲିଆ କଥାକହି ଆଖିକୁ ନଚାଏ । ନବରଙ୍ଗ ଦେଖାଇ ନଥିବା କଥାକୁ ନିହାତି ସତ ଭଳି କହିଦିଏ । ନିଶରେ ପେଜମାରି ସେ ନାଟକର ନାୟକ ସାଜେ ।

ନାଆଁକୁ ମାତ୍ର ଘରଟି ଅଛି । ନାଆରେ ଥାଇ ସେ ଖାଏ, ପିଏ ପୁଣି ରାତିରେ ନିଧଡ଼କରେ ନିଦରେ ଶୋଇପଡ଼େ । ନିହାତି ଦରକାର ନ ପଡ଼ିଲେ, ନଟିଆ ଘରକୁ ଯାଏନାହିଁ ।

ନିଦାମୂର୍ଖ ନଟିଆ ନିଜକୁ ଜଣେ ସର୍ବଜ୍ଞ ମନେକରେ । ନିପଟ ମଫସଲିଆଙ୍କୁ ସେ ନାଗଲୋକ, ନରଲୋକ ତଥା ନରକର ନୀତି ନିୟମ ବିଷୟରେ କହି ମଜାନିଏ । ନାଆରେ ଯାତ୍ରୀମାନଙ୍କଠାରୁ ଶୁଣିଥିବା ନୂଆକଥାକୁ ଅନ୍ୟଯାତ୍ରୀଙ୍କୁ କହି ନିଜର ଜ୍ଞାନଥିବା ଜଣାଏ ।

ନିଉଛଣା କଥାକୁ ସେ ନିର୍ଲଜ୍ଜ ଭଳି ବଢେଇକରି କହି ନାଟଦେଖେ । ନଖଦର୍ପଣରେ ସେ ସବୁ ଖବର ରଖିଛି ବୋଲି କହେ । ନାକକୁ ଫୁଲେଇ, ନହକା ଅଣ୍ଟାକୁ ହଲେଇ, ମଥାକୁ ନୁଆଇଁ ନିଜସ୍ୱ ଢଙ୍ଗରେ ନାନାବାୟା ଗୀତଗାଏ । ନିନ୍ଦୁକମାନଙ୍କୁ ସେ ନୀରବ କରେଇ ଦେଇଥାଏ । ନିଜେ ନିର୍ବିକାର ଥିବାରୁ ସେ ନିର୍ଭୟରେ ଥାଏ ।



ନେଲାକିଏ, ଦେଲାକିଏ ସବୁଦେଖି ନଟିଆ ନିରାସକ୍ତ ଥାଏ । ନିଶ୍ଚିତ ମୃତ୍ୟୁମୁଖରୁ ସେ କେତେଥର ନାଆର ଯାତ୍ରୀଙ୍କୁ ରକ୍ଷା କରିପାରିଛି । ନେଙ୍ଗଡ଼ା, ଛୋଟା ଆଉ ନିଃସହାୟ ଲୋକମାନଙ୍କୁ ସେ ମାଗଣାରେ ନଈପାରି କରିଦିଏ । ନୀତି ବିରୁଦ୍ଧ କାର୍ଯ୍ୟପାଇଁ ସେ କେବେ କାହା ପାଖରେ ନେହୁରା ହୁଏନାହିଁ । ନିସଙ୍ଗ ହେଲେ ବି ସେ ନୈସର୍ଗିକ ସୁଖପାଏ ।

ନଟିଆ ଏବେ ହେଇଯାଇଛି, ନୋଳିଆସାହିରେ ଜଣେ ନାମକରା ନେତା ।

୦୦୦



# ପାଞ୍ଚମନ ପଚିଶ ପ୍ରକୃତି

ପଇସାବାଲା ଘରେ ପଞ୍ଚାନନ ପଶାୟତର ଘର । ପିଲାବେଳେ ତାକୁ ଲୋକେ ପଞ୍ଚୁଆ ବୋଲି ଡାକୁଥିଲେ । ପଇସା ତ ପରଶୁକୁ ପର୍ଶୁରାମ କରିଦିଏ । ପଞ୍ଚୁଆ ପନିପରିବା ବଦଳରେ ପନୀର ତରକାରୀ ଖାଉଥିଲା । ପାଣି ବଦଳରେ ପଇଡ଼ ପିଉଥିଲା ।

ପରପିଠିରେ ସେ ପାଦଦେଇ ଉପରକୁ ଉଠି ବଡ଼ହେଲା । ପଦ୍ମପତ୍ରରେ ପାଣି ନ ଲାଗିଲା ପରି, ପୃଥିବୀର ପ୍ରାଣୀମାନଙ୍କ ପରିଶ୍ରମର ପୀଡ଼ା ତାକୁ ଛୁଇଁ ପାରି ନ ଥିଲା । ପାଟି ସୁଆଦିଆ ପଲଉ, ପୁରି ଖାଇ ତାର ପିଲାଦିନ କଟିଥିଲା । ପାଟଛତି ଧରି ସେ ପଦାକୁ ବାହାରେ । ପାଠ ପଢ଼େଇବାକୁ ପଣ୍ଡିତେ ଘରକୁ ଆସନ୍ତି । ପାଦୁକା ଉଠେଇବାକୁ ତ ପୁରପରିବାରୀ ପାଦଟେକି ରହିଥାଆନ୍ତି । ପିନ୍ଧିଥିବା ପ୍ୟାଣ୍ଟସାର୍ଟକୁ ବି ସେ ଖୋଲିବାକୁ ପର ଉପରେ ନିର୍ଭର କରେ ।

ପୂର୍ବଜନ୍ମର ପୁଣ୍ୟଫଳରୁ ସେ ନିଜଇଚ୍ଛାକୁ ପୂର୍ଣ୍ଣମାତ୍ରାରେ ପୂରଣ କରିପାରୁଥିଲା । ପରିଶ୍ରମ ନ କରିବାରୁ ସେ ପୃଥୁଳକାୟ ହେବାରେ ଲାଗିଥିଲା । ପାଦ ଉଠେଇ ଚାଲିବାକୁ ବି ପଛଘୁଞ୍ଚା ଦେଲା । ପେଟେଇ ଶୋଇ ଖାଇବା ପିଇବା କଲା ।

ପଣ୍ଡିତେ ପାଠ ପଢ଼େଇବାବେଳେ କହିଥିଲେ-"ପଞ୍ଚାନନବାବୁ ! ପାଞ୍ଚମନ ଆଉ ପଚିଶ ପ୍ରକୃତି ଆମକୁ ନିୟନ୍ତ୍ରଣ କରିଥାଏ । ପଞ୍ଚେନ୍ଦ୍ରୀୟକୁ ପାପଯୁକ୍ତ କରିବାକୁ ଦେବନାହିଁ । ପୂର୍ବପୁରୁଷମାନେ ଆମକୁ ପାପପୁଣ୍ୟକୁ ପରିଚିତ କରେଇ ଦେଇଛନ୍ତି । ପରଧନ, ପରସେବା, ପରଭୁକ୍ତ, ପରପଞ୍ଚ ଓ ପରନିନ୍ଦା ପରବର୍ତ୍ତୀକାଳରେ ପରାଭବ ଦେଇଥାଏ । ପରୋପକାରୀ, ପରିଶ୍ରମୀ ପୁରୁଷକୁ ପରମେଶ୍ୱର ପରମସୁଖ ଦେଇଥାଆନ୍ତି । ପଇସା, ପଦପଦବୀ, ପ୍ରତିଷ୍ଠା ଓ ପ୍ରତିପତ୍ତି ପାଚିଲାପତ୍ର ପରି ପଡ଼ିଯାଏ । ପାଣିପରି ମାଟିରେ ମିଶିଯାଏ । ପରିବାରଲୋକ ବି ଦିନେ ପର ହେଇଯାଆନ୍ତି । ପୂଜା ଓ ପ୍ରାର୍ଥନା କଲେ, ପ୍ରଭୁ ଯେତିକି ଖୁସି ହୁଅନ୍ତି-ପତିତଜନର ସେବାରେ ତାଠାରୁ ଅଧିକ ଖୁସିହେବେ । ପର ଉପରେ ନିର୍ଭର ନ କଲେ, ପତଳାହେଇ ତମେ ନିଜ ପାଦରେ ଚାଲିପାରିବ । ପରିଶ୍ରମ କରି ପରୋପକାର କାମରେ ମନପ୍ରାଣ ଢାଳିଦିଅ । ପରିତୃପ୍ତ ଜୀବନ ପାଇଁ ପୁରୁଣାକାଳିଆ ରଜାପ୍ରଜା ନୀତି ଛାଡ଼ ।"

ପଣ୍ଡିତଙ୍କ ପରାମର୍ଶ ପରପୁଷ୍ଟ ପଞ୍ଚୁଆ ମନରେ କିଛି ପ୍ରଭାବ ପକାଇ ପାରିଲାନାହିଁ । ପରିପକ୍ୱ ବୟସହେବା ପୂର୍ବରୁ ତାକୁ ପରଲୋକ ପ୍ରାପ୍ତ ହେଇଗଲା ।

୦.୦୦

# ଫୁଟାଣିଆ ଫଗୁଆ

ଫକୀରପଡ଼ାରୁ ଫେରାର ହେଇଯାଇ ଫୁଲବାଣୀରେ ରହୁଥିଲା, ଫୁଟାଣିଆ ଫଗୁଆ । ଫଟା ଫତେଇ ଖଣ୍ଡେ ପିନ୍ଧି ସେ ମନଫୂର୍ତ୍ତି କରି ଘରୁ ବାହାରିପଡ଼େ । ଫୁଲସଞ୍ଜବେଳେ ଫାଟକ ପାଖରେ ଠିଆହେଇ ମନଫୁଲାଣିଆ ଗୀତଗାଏ । ଫନ୍ଦି ଫିକର କରି ସରଳ ଲୋକକୁ ଫସେଇ ତାଠାରୁ ଫାଳେ ବିସ୍କୁଟ, ଫିକାଚାହା କପେ ପିଏ । ଫାଜିଲ ପରି ହସେ । ଫାଲ୍‌ତୁଲୋକଙ୍କ ସହିତ ମିଶି ଫେରିବାଲାମାନଙ୍କୁ ଡରେଇ ଚାନ୍ଦା ଆଦାୟ କରେ । ଫାଇଦା ନ ଥିଲେ ବି ସେ ଫୁଲବଗିଚାକୁ ବୁଲିଯାଏ । ଫାଣ୍ଡିବାଲାଙ୍କୁ ଦେଖିଲେ, ଫାଙ୍କଦେଇ ଖସି ପଳାଏ । ଫିସ୍‌ଫିସ୍ କଥା କହୁକହୁ ଫଳଦୋକାନରୁ ଗୋଟାଏ ଫଳ ଉଠେଇନେଇ ଚୋବାଇ ପଳାଏ । ଫାଉମାରି ପରିବା ଦୋକାନୀଠାରୁ ଗୋଟାଏ ଦୁଇଟା ଫୁଲକୋବି ନେଇ ପଳାଏ । ଫକଡ଼ଟାଏ ବୋଲି ତାକୁ ସମସ୍ତେ ଜାଣନ୍ତି । ଫୁଲ୍ସ୍‌ଲେଇ ଫାସଲେଇ ଯେତେ ବିକଳହେଲେ ବି କେହି ତାକୁ ଫଟାପାହୁଲାଟିଏ ବି ଧାର ଦିଅନ୍ତି ନାହିଁ ।

ଫଟକା ଦୋକାନୀକୁ ଦିନେ ସେ ଫିସାଦିଆ କଥାକହି ଫସେଇ ଦେଇଥିଲା । ଫୁଟୁ ନ ଥିବା ଫଟକାକୁ ଫିଟେଇ ସେଥିରେ ଫିଟିକିରି ଗୁଣ୍ଡଦେଇ ଫୁଙ୍କିଦେଲେ, ଫଟାଫଟ କାମଦେବ ବୋଲି କହିଲା । ଫିକର ବାହାର କରି ସେ ତା ଫଟକାରୁ କିଛିନେଇ ଚାଲିଗଲା । ଫୁମ୍ପୁଡ଼ି ମାରି ପଇସାଦେବାକୁ ମନା କରିଦେଲା ।

ଫଟକାବାଲା ଫାଣ୍ଡିକୁ ଯାଇ ଫେରାଦ ହେଲା । ଫାଣ୍ଡିବାବୁ କାଠ ଫାଳିଆରେ ପିଟି ତା ଫଡ଼ିଆକୁ ଫଟେଇଦେଲେ । ଫାଲୁଆ ଗାଲକୁ ଖୁନ୍ଦା ମାରିମାରି ଫୁଲେଇ ଦେଇଥିଲେ । ଫାଙ୍କା ଦେଖି ଫଗୁଆ ସେହିଦିନ ଫକୀରପଡ଼ାକୁ ଫେରିଗଲା ।

୦୦୦



# ବାନାବାବା ଓ ବନାବାବା

ବଣିଆପୁଅ ବାନାମ୍ବର ବାରିକପୁଅ ବନମାଳି ଦୁହେଁ ବଡ଼ ବଦମାସ ଥିଲେ । ବେଆଇନ କାମକରି ସେମାନେ ବଦନାମୀ ହେଇଯାଇଥିଲେ । ବଙ୍ଗଳାଦେଶକୁ ପଳାଇ ସେମାନେ ବଙ୍ଗାଳିବାବୁଙ୍କ ବୋଲହାକ ଆଉ ବାଡ଼ି ବଗିଚାରେ କାମକରି ଲୁଚିରହିଥିଲେ । ବାରବର୍ଷ ବାରଆଡ଼େ ବୁଲିବୁଲି ସେମାନେ ବାରିପଦାରେ ପହଞ୍ଚିଲେ ।

ବାନାମ୍ବର କହିଲା-:"ଆରେ ବନା ! ବାହାରେ ରହି ଆମର ବୟସ ବଢ଼ିଗଲାଣି । ବାଧ୍ୟହେଇ ଆମକୁ ବୁଦ୍ଧି ଖଟେଇ ବଞ୍ଚିବାକୁ ହେବ ।:"

ବନାର ବହୁତଦିନ ତଳରକଥା ମନେପଡ଼ିଗଲା । ବାବାଜୀ ଜଣକଠାରୁ ସେ ବଶୀକରଣ ମନ୍ତ୍ର ଶିଖୁଥିଲା । ବାଜିକରହେଇ ବଞ୍ଚିବାକୁ ଚାହୁଁଥିଲା ।

ବାବା ବେପାରଟା ସତରେ ଏବେ ବଢ଼ିଆ ଜମିବ । ବାବାହେବାକୁ ମୋର ସବୁଗୁଣ ରହିଛି । ବାନାଟା ତ ସବୁ କାମକୁ ଢେଙ୍ଗା । କର୍ଁଦେଇପାରେ । ବାବାଜୀ ଅଭିନୟ ଦେଖି ସେ ଯଦି ବେହିଆ ପରି ହସିଦେବ । ବାଡ଼ିଆଖାଇ ଶେଷରେ ଏଇଠୁ ଆମକୁ ବିଦା ହେବାକୁ ପଡ଼ିବ ।

ବନା ନାମଟା ମୋର ଆଜିଠାରୁ ବଦଳିଗଲା । ବୈକୁଣ୍ଠବିହାରୀ ବାବା ନାମରେ ମୁଁ ପରିଚିତ ହେବି । ବାନା ମୋର ଚେଲାହେଇ ଶିଷ୍ୟ ଯୋଗାଡ଼ କରିବ । ବୁଦ୍ଧି ମୋର, ବଳ ବାନାର । ବାଜାବଜେଇ, ବଇଁଶୀ ଫୁଙ୍କି ବସ୍ତିଲୋକ ମୋର ନାମ କୀର୍ତ୍ତନ କରିବେ । ବସ୍ ବାନା ତ ଭଲ ବଙ୍ଗଳା କହିପାରେ । ବିଦେଶ ବି ବୁଲିଛି । ବୈକୁଣ୍ଠବିହାରୀ ଜଣେ ବିଶ୍ୱପ୍ରସିଦ୍ଧ ବାବାବୋଲି ସେ ବଙ୍ଗଳାରେ କହି ପ୍ରଚାର କରିଦେବ । ବାନାକୁ ଡାକି ସେ ସବୁ ଯୋଜନା କଥା କହିଲା ।

ବାନା କହିଲା- " ବାବା ଏହି ଯୋଜନାଟା ମୋର । ବିବାଦ ସୃଷ୍ଟି କରନା । ବାଙ୍କବାବା ନାମରେ ମୁଁ ନିଜକୁ ନାମିତ କରିସାରିଛି । ବିଳମ୍ବ ନ କରି ତୁ ବସ୍ତିକୁ ଯାଇ କିଛି ବାଦ୍ୟକାର, କେତେଟା ବାକ୍ୟବୀର ଆଉ କିଛି ବେକାର ଯୁବକ-ଯୁବତୀ, ବିକାରଗ୍ରସ୍ତ ଲୋକ ଯୋଗାଡ଼ କର । ବାନା କଥାଶୁଣି ବନା ମୁଣ୍ଡରେ ବଜ୍ର ପଡ଼ିଲାପରି ଲାଗିଲା । ବୁଦ୍ଧି ତାର ହଜିଗଲା । ବାରିକ ଖୁର ବାହାରକରି ସେ ବାନାର ଦୁଇଟା କାନକୁ କାଟି ପକେଇଲା । ବିକଟଧାଡ଼ି ଛାଡ଼ି ସେ ବିକଳହେଇ ଧାଇଁଲା ଥାନାକୁ । ବାଲୁଙ୍ଗା ବନାକୁ ପୋଲିସ ବହେ ଛେଚିଲେ । ବଳେବଳେ ଧରାଦେଇ ଏବେ ଦୁହେଁ ବନ୍ଧାହୋଇ ବାବାହେବା କଥା ଭୁଲିଯାଇଛନ୍ତି ।

୦୦୦

# ଭଦ୍ରକର ଭମରା

ଭାଗଚାଷୀ ଭକ୍ତଦାସ ଭଦ୍ରକ ଅଞ୍ଚଳର ଲୋକ । ଭୁରି ଭୋଜନ, ଭୋଜିଭାତ ଭଲ ଦିଅନ୍ତି ବୋଲି ଲୋକେ ତାଙ୍କୁ ଭାରି ଭଲଲୋକ କହନ୍ତି । ଭ୍ରମରବର ତାଙ୍କରି ପୁଅହେଇ ତାଙ୍କଭଳି ହେଲାନହିଁ । ଭଗାରିମାନେ ତାର ଭାବଭଙ୍ଗୀ ଦେଖି ଭ୍ରମରବରକୁ ଭମରା ଭମରା ଡାକିଲେ । ଭମରା ନାଆଁରେ କେତେ ଭଳିଭଳିକା କଥା ଉଠେଇଲେ । ଭମରା ଭକୁଆଟାଏ । ଭଦ୍ରକାଳୀଙ୍କ ପାଖକୁ ଯାଉଯାଉ ସେ ଭଣ୍ଡବାବାଙ୍କ ପାଖରେ ପହଞ୍ଚି ଯାଉଛି । ଭୟାଳୁ ଭମରା ଭ୍ରମରେ ପଡ଼ି ନିଜ ଭାଇ ଭଉଣୀଙ୍କ ନାମକୁ ବି ଭୁଲିଯାଏ । ଭାର-ଥୋରନେଇ ସାନ ଭଉଣୀ ଭାରତୀ ଘରକୁ ଯାଉଯାଉ ସେ ବଡ଼ ଭଉଣୀ ଭାନୁମତୀ ଘରେ ପହଞ୍ଚିଯାଉଛି । ଭାବନା ରାଜ୍ୟରେ ଥାଇ ସେ କଣ ଭାବୁଥାଏ କେଜାଣି ? ଭୂତପ୍ରେତଙ୍କୁ ସତ ତାର ଭାରିଭୟ ।

ଭୀମସେନ ହେଉଛନ୍ତି, ଭମରାର ଭିଣେଇ । ଭାରି ଭଲଲୋକଟିଏ । ଭମରା ବିଷୟରେ ସେ ଭିନ୍ନକଥା ଶୁଣି ତାକୁ ଭୁବନେଶ୍ୱର ନେଇ ଆସିଲେ । ଭଉଣୀ ଭବାନୀ, ଭଣଜା ଭରତ, ଭାଣିଜୀ ଭାର୍ଗବୀ ଭମରାକୁ ଭାରି ଭଲ ପାଉଥିଲେ । ଭଣଜା-ଭାଣିଜୀଙ୍କ ସହିତ ମିଶି ସେ ଭଜନ, ଭକ୍ତିଗୀତ ଗାଇଲା । ଭଗବାନଙ୍କ ବିଷୟରେ ଜାଣିଲା । ଭଦ୍ର ବ୍ୟବହାର ଆଉ ଭଲକଥା ଶିଖିଗଲା । ଭୁବନେଶ୍ୱରେ ତାକୁ କେହି ଆଉ ଭମରା ଡାକିଲେ ନାହିଁ । ଭ୍ରମରବର ନାଆଁଟା ଶୁଣିବାକୁ ତାକୁ ଭଲ ଲାଗିଲା । ଭଙ୍ଗାମନ ତାର ଧୀରେଧୀରେ ଯୋଡ଼ିହେବାରେ ଲାଗିଲା ।

ଭବାନୀ ଦିନେ ବୁଝାଇଦେଲା-:"ଭଗବାନ ଭାରିଦୟାଳୁ । ଭଲବୁଦ୍ଧି ସେ ଦିଅନ୍ତି । ଭାଗ୍ୟକୁ ବଦଳେଇବା ଆମ ହାତର କାମ । ଭୂତପ୍ରେତ ବୋଲି କିଛି ନାହିଁ । ଭ୍ରମରେ ଥିଲେ ଭୂତ ଦେଖାଯାଏ । ଭିକ୍ଷା ମାଗିବା ତ ଆମେ କେବଳ ଭଗବାନ କି ଭଗବତୀଙ୍କ ପାଖରେ ହାତ ପାତିବା । ଭ୍ରମଥିଲେ ମନରେ ଭୁଲ ହେଇଯାଏ । ଭୟ ଛାଡ଼ି ଭଲକାମରେ ମନଲଗା ।:" :



ଭୁଲତା ଟେକି ଭ୍ରମର ଭଉଣୀର କଥାକୁ ଶୁଣିବାରୁ ତାର ଭାବାନ୍ତର ହେଲା । ଭୟ ଦୂରହେଇ ତା ମନରେ ସାହସ ଭରିଗଲା । ଭିଣେଇ, ଭଉଣୀଙ୍କ ଭରସା ପାଇ ସେ ନିଜର ଭବିଷ୍ୟତ ଗଢ଼ିବାରେ ଲାଗିପଡ଼ିଲା ।

୦୦୦

# ମକୁମ୍ ମିଆଁର ମୀନା

ମକୁମ୍ ମିଆଁ ମେଞ୍ଚାଏ ଛେଳି ପାଳିଥିଲା । ମାଈଛେଳି ଭିତରୁ ମୀନାକୁ ସେ ନିଜର ମାଆପରି ଭଲପାଏ । ମୁଢ଼ି ଖାଇବାକୁ ଦିଏ । ମୀନାପାଇଁ ତ ସେ ଆଜି ମୁଣ୍ଡଟେକି ମହାଜନ ହେଇପାରିଛି । ମାସକୁ ଗୋଟାଏ ଅଣ୍ଡିରାଛୁଆ ବିକିଦେଲେ, ମାଲିକର ଘରଭଡ଼ା ଆଉ ଘରଖର୍ଚ୍ଚ ଉଠିଯାଏ । ମାଛ-ମାଂସ କିଣି ମନଖୁସିରେ ଖାଏ । ମୀନାର ଛୁଆମାନଙ୍କୁ ସେ ନାଆଁଧରି ଡାକେ । ମାଣିକ ଭାରି ଗେହ୍ଲେଇ । ମକୁମ୍ ମିଆଁର ମନକଥାକୁ ସେ ବୁଝିପାରେ । ମେଁ-ମେଁକରି ସେ ନିଜମନର ସୁଖ-ଦୁଃଖ ଜଣାଏ । ମଇନା ଦେଖିବାକୁ ମାଟିଆ । ମଲ୍ଲୀ ତ ତୋଫା ଗୋରୀ । ମୋତିର ମୁନିଆଁ ଶିଙ୍ଗକୁ ସମସ୍ତେ ଡରନ୍ତି । ମୋହିନୀଟା ଭାରି ମାରଣା । ମିଳି ଗୋଟାଏ ମଠେଇ ଛେଳିଛୁଆ । ମନଖୁସିରେ ମଳାବାନ୍ଧି ସେମାନେ ଶୁଅନ୍ତି । ମଝିରେ ମାଆ ମୀନା ଶୋଇ ଛୁଆଙ୍କୁ ଜଗେ । ମଶା କାମୁଡ଼ିଲେ, ମେଁ-ମେଁକରି ମକୁମ୍ ମିଆଁକୁ ଡାକେ ।

ମଝିରେ ମଝିରେ ମୀନା ତା ଛୁଆ ମୋତି ଆଉ ମୋହିନୀକୁ ମାଡ଼ଦିଏ । ମେଳିରୁ ବାହାର କରିଦେବାକୁ ଧମକାଏ । ମିଳିମିଶି ମଜାରେ ରହିବାକୁ ବୁଝାଏ । ମିଲିର ମଥାକୁ କାମୁଡ଼ି କହିଦିଏ-"ମଠେଇ ମଠେଇ କାମ କଲେ, ମୁହଁକୁ ଦାନା ମିଳିବ ନାହିଁ ।" ମକୁମ୍ ମିଆଁ ମସଜିଦକୁ ଯାଇ ମହମ୍ମଦଙ୍କୁ ପ୍ରାର୍ଥନାକରି କହେ-"ମୋର ତ କିଛି ଦରକାର ନାହିଁ । ମୀନା ଛେଳିର ଛୁଆମାନଙ୍କୁ ମଡ଼କରୁ ରକ୍ଷାକର ।"

ମହରମ ଆଉ ଇଦ୍‌ଜୁହା ପର୍ବରେ ସେ ମକାଗୁଣ୍ଡ ମଗେଇ ଆଣି ମୁଠା ମୁଠାକରି ମୀନାର ଛୁଆମାନଙ୍କୁ ଖାଇବାକୁ ଦିଏ । ମନମାରି ଠିଆହେଇଥିବା ଛୁଆଙ୍କୁ ସେ ମିଠାମିଠା ଗୀତ ଶୁଣାଏ । ମାସଶେଷରେ ସମସ୍ତଙ୍କୁ ମୁଆଁ ଗୋଟେ ଲେଖାଁ ଖାଇବାକୁ ଦିଏ । ମଣ୍ଡପ ଉପରେ ବସି ସେ ସବୁ ଛେଳିଙ୍କୁ ମଟମଟ କରି ଦେଖେ ।

ମଉକା ଦେଖି ମାଂସବେପାରୀମାନେ ଆସନ୍ତି । ମଶାଲ ଜାଳି ଅଣ୍ଡିରାଛେଳିଙ୍କୁ ବାଛି ନେଇଯାଆନ୍ତି । ମନ୍ଦବୁଦ୍ଧି ମଣିଷ ତାଙ୍କୁନେଇ କଣ କରନ୍ତି ? ମୀନା ଜାଣିପାରେନାହିଁ । ମନକୁ ମନ ସେ ଭାବେ, ମକୁମ୍ ମିଆଁ ନିଶ୍ଚୟ ତାଙ୍କୁ ମଉସାଘରକୁ ପଠାଇ ଦେଉଥିବ । ମାଉସୀ ତାଙ୍କୁ ସ୍ନେହ ମମତାଦେଇ ମଜାରେ ମେଳା ବୁଲେଇ ଆଣୁଥିବେ । ମାମୁଁଘରକୁ ବୁଲିଯାଇ ମାଇଁଙ୍କ ଛୁଆ ସହିତ ସେମାନେ ଖେଳୁଥିବେ ।

୦୦୦

# ଯମୁନା ଓ ଯଶୋଦା

ଯମୁନା ଓ ଯଶୋଦା ଦୁହେଁ ଯମଜ ଭଉଣୀ । ଯଜମାନୀକରି ଚଳୁଥିବା ଯଜ୍ଞେଶ୍ୱର ସେମାନଙ୍କୁ ଯତ୍ନରେ ପାଳିଥିଲେ । ଯାଗଯଜ୍ଞ କାମରେ ଯଜ୍ଞେଶ୍ୱରଙ୍କୁ ଆଗ ଖୋଜାପଡ଼େ । ଯତ୍‌କିଞ୍ଚିତ ଅର୍ଥ ମିଳେ । ସେଥିରୁ ସେ ଯଥାକଥାକି ଘର ଚଳାଇନିଏ । ଯଥାବିଧି ପୂଜାପାଠ କରନ୍ତି ବୋଲି ତାଙ୍କୁ ଯଥାସମ୍ମାନ ମିଳେ । ଯନ୍ତ୍ରଯୁଗରେ ମଧ୍ୟ ତାଙ୍କର ଯଶଖ୍ୟାତି ରହିଛି ।

ଯୁବାବୟସରେ ସେ ଯକ୍ଷ୍ମାରୋଗରେ ପଡ଼ି ବହୁତ ଯନ୍ତ୍ରଣା ଭୋଗିଥିଲେ । ଯମଦ୍ୱାରରୁ ଫେରି ଆସିବାକୁ ସେ ଯାବତୀୟ ଉପଚାର କରିଥିଲେ । ଯୋଗକୁ ଯେଉଁ ଡାକ୍ତର ଯୁଟିଲେ, ଯାଦୁକର ଭଳି ସେ ତାଙ୍କୁ ଭଲ କରିଦେଇଥିଲେ ।

ଯଶୋଦା ଯଜୁର୍ବେଦ ପଢ଼ିଥିବାରୁ ଯଜ୍ଞକାମରେ ବାପାଙ୍କୁ ସହଯୋଗ କରେ । ଯମୁନା ଯୋଗବିଦ୍ୟାରେ ପାରଙ୍ଗମ । ଯୋଗ ଶିକ୍ଷାଦେଇ ଅର୍ଥ ଯୋଗାଡ଼ କରେ । ଯୋଗ୍ୟାଝିଅ ଯୋଡ଼ିଙ୍କୁ ପାଇ ଯଜ୍ଞେଶ୍ୱର ତାଙ୍କ ମୃତପତ୍ନୀ ଯଶୋଧାରାଙ୍କୁ ଭୁଲି ଯାଇଥିଲେ ।

ଯୁବତୀ ଝିଅ ଦୁଇଜଣଙ୍କ ପାଇଁ ସେ ଯାମାତା ଖୋଜୁଥିଲେ । ଯୋଗକୁ ଯୁଧିଷ୍ଠିର ପରି ଧର୍ମପରାୟଣ ଯୁବକ ଯୁବରାଜ ଯମୁନା ପାଇଁ ମିଳିଗଲା । ଯାଜପୁରର ଯୁବଯନ୍ତ୍ରୀ ଯଯାତି ମନକୁ ଯମୁନା ପସନ୍ଦ ହେଲା । ଯାଆଁଳା ଭଉଣୀଙ୍କ ବାହାଘର ଗୋଟିଏ ଯାଗାରେ ଯୋଗାଡ଼ ହେଇଗଲା । ଯୋଗ୍ୟ ଯାମାତାଙ୍କୁ ପାଇ ଯଜ୍ଞେଶ୍ୱର କହିଲେ-"

ଯାହାପାଇଁ ଯିଏ, ଯଦୁପତି ଯେମିତି ହେଲେ ତାକୁ
ଆଣି ଯଥାସମୟରେ ଯୁଟେଇଦେଲେ ।
ଯେତେବେଳେ ମୋର ଯାହା ଦରକାର
ହେବ, ଯାମାତାମାନେ ଯୋଗେଇଦେବେ ।
ଯୋଜନାବଦ୍ଧ ଭାବରେ କାମକଲେ,
ଜୀବନଯୁଦ୍ଧରେ ଯୁଝିହୁଏ । ଯାତ୍ରାପଥ
ସୁଗମ ହୋଇଥାଏ । ଯାଅ ମୋର ମାଆ !
ଯୁଗଯୁଗକୁ ଯେପରି ମୋ ନାଆଁ ରହୁ ।"

୦୦୦



# ରାମକୃଷ୍ଣ ଓ ରମାକାନ୍ତ

ରାଇରଙ୍ଗପୁରର ରାମକୃଷ୍ଣ ଓ ରଘୁନାଥପୁରର ରାଧାକାନ୍ତ ଦୁଇଜଣ ଶିଷ୍ୟଥିଲେ । ରବିଶଙ୍କର ମଠରେ ଥାଇ ସେମାନେ ରାଜଯୋଗ ଶିକ୍ଷା କରୁଥିଲେ । ରନ୍ଧନକାର୍ଯ୍ୟରୁ ଆରମ୍ଭକରି ରସବୋଧ ଶିକ୍ଷାପାଇ ସେମାନେ ନିଜନିଜ ରୁଚିର କାମକୁ ଆଦରି ନେଇଥିଲେ ।

ରାମକୃଷ୍ଣ ରମଣୀୟ ଦୃଶ୍ୟକୁ ଲକ୍ଷ୍ୟକରି ରସଭରା କବିତା, ରାମାୟଣର ଗାଥା ରଚନା କରୁଥିଲେ । ରସିକପଣିଆ ଓ ରଚନା ଶୈଳୀକୁ ଦେଖି ଗୁରୁ ରବିଶଙ୍କରଙ୍କ ମନ ରସି ଯାଉଥିଲା । ରାଗରୋଷ କରିଥିବା ଲୋକେ ତାଙ୍କର ରୋଚକ କଥାପଢ଼ି ରସମୟହେଇ ଉଠୁଥିଲେ । ସେ ରାଶିରାଶି ପୁସ୍ତକ ରଚନା କରୁଥିଲେ । ରୌପ୍ୟପଦକଦେଇ ଗୁରୁ ରବିଶଙ୍କର କହିଥିଲେ- "ରାମକୃଷ୍ଣ ହେଉଛି ଜ୍ଞାନୀ ଆଉ ମୋର ଶ୍ରେଷ୍ଠଶିଷ୍ୟ ।"

ରୋମାଞ୍ଚିତହେଇ ଅଧିକରୁ ଅଧିକ ସାହିତ୍ୟ ରଚନା କଲେ । ରୋଜଗାରର ପନ୍ଥାଭାବେ ସାହିତ୍ୟ ରଚନାକୁ ଗ୍ରହଣ କରିନେଲେ ।

ରାଧାକାନ୍ତ ରାଜକୁମାର ଭଳି ଚେହେରା ପାଇଥିଲେ । ରାମମଣ୍ଡପରେ ରକମ ରକମର ରସାଳ କାହାଣୀ କହି ଲୋକଙ୍କ ମନୋରଞ୍ଜନ କରନ୍ତି । ରାମକୃଷ୍ଣଙ୍କର ରଚିତ ଗୀତକୁ ରଙ୍ଗଦେଇ ଗାଆନ୍ତି । ରସହୀନ ଜ୍ଞାନକୁ ସେ ରସାଣିତ କରି ଦର୍ଶକଙ୍କୁ ଧରି ରଖିପାରୁଥିଲେ । ରୋଜଗାରର ପାଇଁ ପ୍ରବଚନକୁ ସେ ଆପଣେଇ ନେଇଥିଲେ ।

ରାମକୃଷ୍ଣ ଓ ରାଧାକାନ୍ତ ନିଜ ନିଜ ରାସ୍ତାରେ ରହି କାର୍ଯ୍ୟରେ ରତଥିଲେ । ରାଧାକାନ୍ତ ଅନେକ ରଚନାକରି ପୁସ୍ତକ ପ୍ରକାଶ କଲେ । ରହିରହି ରାମକୃଷ୍ଣ ଭାବିଲେ- "ରାଧାକାନ୍ତର ଭଲ ରୋଜଗାର ହେଉଛି । ରସସୃଷ୍ଟିକାରୀ ହେଲି ମୁଁ । ରସିକଲୋକମାନେ ମୋତେ ଚିହ୍ନିଲେ ନାହିଁ କାହିଁକି ?"

ରବିଶଙ୍କର ବୁଝାଇଦେଲେ-"ରଚନାକାରୀମାନେ ମାଆ ସଙ୍ଗେ ସମାନ । ରାତିଦିନ ମାଆ ଛୁଆର ଚିନ୍ତାକରେ, ଶେଷରେ ସେ ପିତାଙ୍କ ନାମରେ ପରିଚିତ ହୁଏ । ରତ୍ନ ସଂଗେ ଜ୍ଞାନ ତୁଳନୀୟ । ରାମକୃଷ୍ଣର ପ୍ରବଚନ ଅସ୍ଥାୟୀ । ରଚିତ ଜ୍ଞାନଧର୍ମୀ ପୁସ୍ତକ ତୁମର ଚିରସ୍ଥାୟୀ ହେଇରହିବ । ରୋଜଗାର ନ ହେଉ କିନ୍ତୁ ତୁମେ ହିଁ ଅମରହେଇ ରହିବ ।"

୦୦୦

# ଲମ୍ବୋଦର ଓ ଲାଜବତୀ

ଲଙ୍ଗଳ ଜୁଆଳି କାନ୍ଧରେ ପକେଇ ଲମ୍ବୋଦର ଓରଫ ଲମ୍ବୁଆ ବଣବାଟରେ ଯାଉଥିଲା । ଲାରେ ଲାପ୍- ଲାରେ ଲାପ୍ ପୁଣି ଲା-ଲା ଗୀତର ସ୍ୱର ଲମ୍ବେଇ ଗାଉଥିଲା । ଲମ୍ବିଯାଇଥିବା ଲଟାବୁଦା ଉପରେ ତାର ନଜର ପଡ଼ିଗଲା । ଲାଙ୍ଗୁଳ ନ ଥିବା ବିଲୁଆଟିଏ ଲସର ପସରହେଇ ଲଟାବୁଦା ମୂଳେ ଲୁଚିଗଲା । ଲମ୍ବୁଆ ଲଙ୍ଗଳ ଜୁଆଳିକୁ ତଳେ ଥୋଇ ତାକୁ ଭଲକରି ଦେଖିଲା । ଲାଙ୍ଗୁଳ ତ ନାହିଁ, ପୁଣି ପଛଗୋଡ଼ ଦୁଇଟା ତାର ଭାଙ୍ଗି ଲଟକି ରହିଛି । ଲମ୍ବୁଆ ପାଟିରୁ ବାହାରି ପଡ଼ିଲା-ଆଃ ! ଲାଚାର ବିଲୁଆଟା କେମିତି ଶିକାର କରି ବଞ୍ଚୁଛି କେଜାଣି ? ଲେଙ୍ଗଡ଼ା ବିଲୁଆ କଥା ଭାବୁଭାବୁ ସେ ଲକ୍ଷ୍ୟକଲା, ଲେଞ୍ଜଡ଼ାଆଖିଆ ବାଘଟା ଗୋଟାଏ ଶିକାରକୁ ପିଠିରେ ଲଦି ଲାଉକରି ସେଇଠି ପହଞ୍ଚିଗଲା । ଲାଞ୍ଜପିଟି ତାକୁ ମଜାରେ ଖାଇଲା । ଲମ୍ବୁଆ ଜୀବନ ବିକଳେ ଗୋଟାଏ ଗଛ ଉପରେ ଚଢ଼ି ଲମ୍ବା ନିଶ୍ୱାସ ପକାଉଥିଲା । ଲେଉଟି ଦେଖିଲା ବାଘଟା କିଛି ହାଡ଼ ଗୋଡ଼କୁ ନେଇ ଲଟାବୁଦା ମୂଳେଥିବା ବିଲୁଆ ପାଖରେ ଥୋଇଦେଲା ।

ଲେଙ୍ଗଡ଼ା ବିଲୁଆ ତାକୁ ଖାଇ ମଜାରେ ଲଟାବୁଦା ମୂଳେ ଶୋଇପଡ଼ିଲା । ଲମ୍ବୁଆର ମନେ ପଡ଼ିଗଲା, ଲୋକେ କହନ୍ତି- "ଲୋକନାଥ ମହାପ୍ରଭୁ କାହାରିକୁ ଉପବାସ ରହିବାକୁ ଦିଅନ୍ତି ନାହିଁ । ଲାଳନ ପାଳନ ଦାୟିତ୍ୱ ତାଙ୍କର । ଲାଳାୟିତ ପ୍ରାଣୀଙ୍କୁ ସେ ଲୋଡ଼ାହେଉଥିବା ଜିନିଷ ଦେବାଲାଗି ସବୁ ବ୍ୟବସ୍ଥା କରନ୍ତି । ଲାଚାରବିଲୁଆ ପାଇଁ ତ ବାଘ ଜଣେ ଲୋକନାଥ । ଲୁହ ଲହୁଦେଇ ମୁଁ ଏତେ ଖଟିବି କାହିଁକି ? ଲଟପଟହେଇ ମୁଁ କାଦୁଅରେ ପଶିବି କାହିଁକି ? ଲେମ୍ବୁ ଲୁଣ ଟିକେ ପାଇଁ ଏତେ ଲଢ଼େଇ କରିବି କାହିଁକି ? ଲୋକନାଥ ତ ମୋର ଲକ୍ଷ୍ୟ ପୂରଣ କରିବେ । ଲକ୍ଷ୍ମୀଦେବୀ ମୋ ଘରେ ରହିବେ ।"

ଲମ୍ବୁଆ ସେଦିନ ଘରକୁ ଫେରିଯାଇ ଘରଣୀ ଲାଜବତୀକୁ ସବୁକଥା କହିଲା । ଲାଜବତୀ କହିଲା- ତମ ମୁହଁକୁ ଟିକେ ଲାଜନାହିଁ । ଲାଙ୍ଗୁଡ଼ ନ ଥିବା ବିଲୁଆ ପରି ହେବାକୁ ଚାହୁଁଛ କାହିଁକି ? ଲେଞ୍ଜଡ଼ାଆଖିଆ ବାଘ ପରି ଲାଚାରମାନଙ୍କୁ ଖାଦ୍ୟଦେଇ ନିଜେ ଲୋକନାଥ ହେଇଯାଉନା ?

ଲଜ୍ଜିତହେଇ ଲମ୍ବୁଆ କହିଲା-"ତୁ ତ ଲାଜବତୀ ନୁହଁ ବରଂ ଆମଘରର ଅସଲ ଲକ୍ଷ୍ମୀ । ଲଟଖଟିଆ ବୁଦ୍ଧିରେ ସେମିତି କହିଦେଇଥିଲି । ଲଢ଼େଇ କରି ବଞ୍ଚୁଥିବା ଲୋକ ହିଁ ପ୍ରକୃତ ଲୋକନାଥ ।"

୦୦୦



# ଶ୍ରୀକର ଓ ଶ୍ରୀଧର

ଶ୍ୱଶୁର ଘରେ ଶରଣ ପଶି ଶ୍ରୀକର ଶାନ୍ତ ଶିଷ୍ଟପିଲାଙ୍କ ପରି ଥାଏ । ଶ୍ରୀମତୀ ଶିଉଳି ଦେଖିବାକୁ ଶାଳିଆପତନି ଭଳି ଅସୁନ୍ଦରୀ । ସାମାନ୍ୟ କଥାରେ ସେ ଶମନପରି ଶ୍ରୀକରକୁ ଶାସ୍ତିଦିଏ । ଶାଣଦିଆ କଟୁକଥା ଶୁଣି ଶ୍ରୀକର ଶାପଗ୍ରସ୍ତ ଶରଣାର୍ଥୀ ପରି ସବୁ ସହିଯାଏ । ଶରାହତ ପକ୍ଷୀପରି ଶିକୁଳି ଛିଡ଼େଇ କୁଆଡ଼େ ଯାଇପାରେନାହିଁ । ଶ୍ରୀମତୀର କଡ଼ା ଶାସନରେ ଶାସିତହେଇ ସେ ଶାଗତୋଳାଠୁଁ ଶୁଖୁଆ ବିକିବା କାମ କରେ । ଶାବଳ କୋଦାଳି ନେଇ ମାଟି ଖୋଳେ । ଶୀତ କି ଖରା ମାନେନାହିଁ । ଶସ୍ତା ବାଜେକଥାକୁ ଶୁଣି ନ ଶୁଣିଲାପରି ରହେ ।

ଶଙ୍କରା ଶ୍ରୀକରର ସାନଶଳା । ଶରୀରଟା ତାର ଶମ୍ବର ପରି ବିରାଟ । ଶଶାପରି ଲମ୍ବା କାନ ଦୁଇଟା ସାଙ୍ଗକୁ ଶିଳପୁଆ ପରି ବଡ଼ ନାକଟା ତାକୁ ଭାରି ଅବାଗିଆ ଦେଖାଯାଏ । ଶିଆଳ ପରି ଶବ୍ଦକରି ସେ କଥାକହେ । ଶିଙ୍ଗାଣି ତାର କେବେ ଶୁଖେନାହିଁ । ଶକଟାସୁର ବୋଲି ତାକୁ ଗାଆଁଲୋକେ କହନ୍ତି । ଶରୀରଟା ଅସୁରଭଳି ଥିଲେ କଣହେବ ? ଶକ୍ତିହୀନ ଶଙ୍କରାଟା ଯେମିତି ବୋକା ସେମିତି ଡରୁଆ । ଶିଉଳିକୁ ସେ ଭାରି ଭୟକରି ଶିଥିଳ ହେଇଯାଏ । ଶକେଇ ଶକେଇ କାନ୍ଦେ ।

ଶଳା ଭିଣେଇ ଦିନେ ଶାହାଡ଼ା ଗଛମୂଳେ ଲୁଚିଲୁଚି କଥାହେଲେ, ଶନିବାରଦିନ ଘରଛାଡ଼ି ବିଦେଶ ପଳାଇଯିବେ । ଶୁକ୍ରବାର ରାତିରେ ସେମାନେ ଶୀତବସ୍ତ୍ର କେତେଖଣ୍ଡ ବାନ୍ଧିସାରି ଶୋଇଥିଲେ । ଶିଉଳି ଶୋଇବାଘରେ ଶାନ୍ତିରେ ଶୋଇଥିଲା । ଶୀଘ୍ରଶୀଘ୍ର ଶଯ୍ୟାତ୍ୟାଗ କରି ସେମାନେ ଘରୁ ବାହାରିଗଲେ ।

ଶଙ୍କିତ ମନରେ ସେମାନେ ଯାଇ ଠିକାଦାର ଶଶଧରଙ୍କ ପାଖରେ ପହଞ୍ଚିଗଲେ । ଶ୍ରୀମତୀ ଶଶିକଳାଙ୍କର ଶୁଭଦୃଷ୍ଟି ଥିବାରୁ ତାଙ୍କୁ ଶ୍ରଦ୍ଧାରେ ଶ୍ରମିକ ଭାବରେ କାମଦେଲେ । ଶିଷ୍ଟ ବ୍ୟବହାର ପାଇ ଶେଷରେ ସେମାନେ ଶୋଧିତ ହୋଇଗଲେ ।

୦୦୦

# ସନ୍ଥସଭାରେ ସାଧୁ

ସାଧୁ ଜଣକ ସନ୍ଥସଭାରେ ସମ୍ବୋଧନ କରି ସମ୍ମିଳିତ ସଜ୍ଜନଙ୍କୁ କହି ଚାଲିଥିଲେ-"ସ୍ୱପ୍ନ ହେଉଛି, ସକଳ ସଫଳତାର ମୂଳଉସ୍ତ । ସମୟ ଆଉ ସୁଯୋଗକୁ ସୌଭାଗ୍ୟଶାଳୀ ମଣିଷ ସର୍ବଦା ସଦୁପଯୋଗୀ କରିଥାଆନ୍ତି । ସ୍ୱପ୍ନ ତାଙ୍କର ସାକାରହେଇ ସୁଖ ପ୍ରଦାନକରେ । ସମସ୍ୟାଗୁଡ଼ିକ ସହଜରେ ସମାଧାନ ହୋଇଥାଏ । ସନ୍ଦେହ ସକ୍ରିୟ ରହିଲେ, ସୁବର୍ଣ୍ଣ ବି ସୋଲା ହେଇଯାଏ ।"

ସମର୍ପଣଭାବ, ସତ୍ୟପାଳନ, ସତ୍‌ଚିନ୍ତନ, ସମୂହ ସ୍ୱାର୍ଥରକ୍ଷା, ସକାରାତ୍ମକ ବିଚାର, ସହଯୋଗ ମନୋବୃତ୍ତି, ସୀମାହୀନ ଦୃଷ୍ଟିଭଙ୍ଗୀ, ସମୟୋଚିତ ବ୍ୟବହାର, ସିଦ୍ଧିପାଇଁ ସାଧନା, ସୌନ୍ଦର୍ଯ୍ୟବୋଧ ପ୍ରତି ଆକର୍ଷଣ, ସରଳ ଜୀବନଶୈଳୀ, ସିନ୍ଧୁରୁ ବିନ୍ଦୁକୁ ଅନ୍ୱେଷଣ କରିପାରୁଥିବା ମଣିଷ ହିଁ ସଫଳତାର ଶୀର୍ଷ ସୋପାନରେ ପହଞ୍ଚିଥାଏ ।

ସାଧାରଣ ମଣିଷଟି ସ୍ୱାର୍ଥ ସର୍ବସ୍ୱ, ସୁବିଧାବାଦୀ ଓ ସୁଖ ସନ୍ଧାନୀ ହେଇଗଲେ, ସଂସାରଯାକର ସମସ୍ୟା ତାକୁ ଘେରିଆସେ ।

ସମସ୍ତେ ସ୍ୱୀକାର କରନ୍ତି, ସଜୀବ ଦିନେ ନିର୍ଜୀବ ହୁଏ । ସାର୍ଥକ ଜୀବନ ପାଇଁ ସୁଖ ଅପେକ୍ଷା ତ୍ୟାଗର ଭୂମିକା ଅଧିକ । ସୁନ୍ଦର ସୃଷ୍ଟିକୁ ଆହୁରି ସରସ ସୁନ୍ଦର କରିବା ଆମ ସମସ୍ତଙ୍କର କର୍ତ୍ତବ୍ୟ । ସ୍ୱଚ୍ଛତା ମାଧ୍ୟମରେ ସମଗ୍ର ମାନବଜାତିକୁ ସୁସ୍ଥ ରଖାଯାଇପାରିବ । ସଚେତନତା ଅଭାବରୁ ସାମାନ୍ୟ ଓ ସାଧ୍ୟରୋଗ ସମାଜକୁ କାବୁ କରିନେଇଯାଇପାରେ । ସ୍ୱାସ୍ଥ୍ୟ ଓ ଶିକ୍ଷାଲାଭ କରିବା ହେଉଛି, ସମସ୍ତଙ୍କର ମୌଳିକ ଅଧିକାର । ସହନଶୀଳତା ଏବଂ ସଞ୍ଜମତା ମାଧ୍ୟମରେ ସଇତାନକୁ ବି ସଂସ୍କାରୀ ମଣିଷ କରାଯାଇ ପାରିବା ସମ୍ଭବ ।" ସାଧୁଙ୍କର ସକରୁଣ ସତ୍‌ଉପଦେଶ ଶୁଣି ସତୀର୍ଥ ସଜ୍ଜନ ସଦାନନ୍ଦ ପଚାରିଲେ-

"ସନ୍ଥମଣ୍ଡଳୀକୁ ଆପଣ ଏସବୁ କଥା କାହିଁକି କହୁଛନ୍ତି ?"

ସ ହା ସ୍ୟ ବଦନରେ ସାଧୁ କହିଲେ-

"ସମାଜର ସର୍ବସାଧାରଣଙ୍କୁ ସଚେତନ କରାଇବା ପାଇଁ ସନ୍ଥମାନଙ୍କୁ ମୁଁ କେବଳ ସ୍ମରଣ କରାଇ ଦେଉଥିଲି ।"

୦୦୦



# ହଗୁରାର ହନୁମାନ ପଇସା

"-ହଇରେ ହେଡ଼ାଖିଆ ! ହୁନ୍ଦର ଲଗେଇଦେଇ ହେଟାଟା ପରି ଠିଆ ହେଇଛୁ କାହିଁକି ? ହୁଁ -କି ଚୁଁ ନକହି ହିକ୍କାମାରୁଛୁ କଣ ? ହାଉଳି ଖାଇଖାଇ ମୋର ହଂସା ଉଡ଼ିଗଲାଣି । ହୁଣ୍ଡାଟାଏ ଭାବି ତୋତେ ମୁଁ ହାଲୁଆ ଖାଇବାକୁ ଦେଲି । ହାତଖର୍ଚ୍ଚା ତ ଦେଉଥିଲି । ହାରିଗୁହାରି ଶୁଣି ତତେ ହାଲୁକା କାମ ଦେଉଥିଲି । ହୃଷ୍ଟପୁଷ୍ଟ ହେଇସାରି ହାତସଫେଇ କାମ ତୁ କାହା ଠୁଁ ଶିଖିଲୁ ? ହନୁମାନ ପଇସା ହାଣ୍ଡି ଭିତରୁ ନେଲୁ କେମିତି କହ । ହଜାର ହଜାର ଟଙ୍କାର ହନୁମାନ ପଇସାକୁ ତୁ ହଡ଼ପ କରିଛୁ । ହାବୁଡ଼ରେ ପଡ଼ିଛୁ, ହାଡୁଡ଼ିରେ ପିଟିପିଟି ତୋ ହାଡ଼ଗୋଡ଼ ପିଞ୍ଜିଦେବି । ହୁସିଆର ଥିବୁ, ହାଲତ୍ ଖରାପ କରିଦେବି । ହାରାମଜାଦା ! ହାଜତକୁ ଯାଇ ସେଇଠି ଖେଚୁଡ଼ି ହାଙ୍କିବୁ ରହ । ହାକିମଙ୍କ ଆଗରେ ହାଜର ହେଲେ ତୋ ବୁଦ୍ଧି ହଜିଯିବ ଯେ- ।"



ହିତାହିତ ଜ୍ଞାନ ହରେଇ ହଗୁରାର ସ୍ତ୍ରୀ ହାରାବତୀ ହରିଆ ଉପରେ ହଙ୍ଗାମା କରୁଥିଲା । ହୁଙ୍କାପରି ଠିଆହେଇ ତା ଗାଳିକୁ ସେ ହଜମ କରିପାରୁ ନ ଥିଲା । ହୃଦୟଟା ସତେ ଯେମିତି ଫାଟିଯାଉଥିଲା । ହଡ଼ବଡ଼େଇ ଯାଇ ସେ ହଟହଟ୍ଟା ହେଉଥିଲା । ହିମ୍ମତ ନଥିଲା, ହାରାବତୀ ଆଗରେ କଥା କହିବାକୁ । ହଇରାଣହେଇ ହତାଶ ମନରେ ହାତଯାଡ଼ି ସେ ହରିନାମ ଜପୁଥିଲା ।

ହଠାତ ସବୁ ଓଲଟ ପାଲଟ ହେଇଗଲା । ହଗୁରା ହାଟରୁ ଫେରି ହାରାବତୀର ହଟଗୋଳ ଦେଖି ହୁଙ୍କାର ଛାଡ଼ିଲା । ହୀନାବସ୍ଥାରେ ହରିଆ ଥରୁଥିଲା ।

ହଗୁରା କହିଲା-"ହଇଲୋ ହାରା ! ହେଳା କରିଥିଲେ, ହରିଆକୁ ତ ତୁ ହାଣି ପକେଇଥାଆନ୍ତୁ ? ହନୁମାନ ପଇସାକୁ ନେଇ ମୁଁ ପରା ହାଟକୁ ଯାଇଥିଲି । ହିନସ୍ତାହେଇ ଫେରୁଛି । ହାଲିହାଲି ତୁ ଚାଲାକ ହେଇଛୁ । ହନୁମାନପଇସା ବୋଲି କହି ତୋତେ କିଏ ତମ୍ବା ପଇସାଟା ହାବୁଡ଼େଇ ଦେଇଛି । ହାତରେ ଧରି ନିଜେ ଦେଖ ।"

ହାଇରେ ବିଧାତା କହି ହାରାବତୀର ହଲକ ଶୁଖିଗଲା । ହରିଆ ହାତକୁ ଧରିପକେଇ ସେ ହାଉଳି ଖାଇଲା ।

୦୦୦

# ଢେଙ୍କାନାଳର ରଙ୍କ

ଶଙ୍କରପୁର ଗାଆଁରେ ଦୁଇସାଙ୍ଗ ରହୁଥିଲେ । ଝିଙ୍କପରି ଚୁଟି ରଖିଥିବା ରଙ୍କ ବୟସରେ ବାଙ୍କଠାରୁ ଢେରବଡ଼ । ହୁଙ୍କାପିଟା ସାଙ୍ଗ ବାଙ୍କକୁ ଡାକି ଦିନେ ରଙ୍କ କହିଲା-"ଟଙ୍କା ରୋଜଗାର କରିବାକୁ ହେଲେ ଆମକୁ ଢେଙ୍କାନାଳ ଯିବାକୁ ପଡ଼ିବ ।

କାଙ୍କଡ଼ପାଳରେ ପଶି ମାଙ୍କଡ଼ମାନେ ତ ସବୁ କଷି କାଙ୍କଡ଼କୁ ଖାଇଯିବେ । ଡଙ୍କେଇ ଆସିଥିବା କାଙ୍କଡ଼ଲତାରେ ମାଙ୍କଡ଼ସା ପରି ପୋକ ଲାଗିଗଲେଣି । ଶଙ୍କା ଆଶଙ୍କାରେ ରହି କାଙ୍କଡ଼ବାଡ଼ିରେ ଆଉ କାମ କରିହେବ ନାହିଁ । ଟଙ୍କା ତ ସମସ୍ତଙ୍କୁ ଦରକାର । ଟଙ୍କା ମୁହଁ କରିଦିଏ ବଙ୍କା । ଖଣ୍ଡିଆପିଙ୍କା ଖଣ୍ଡେ କି ଲାଉ ଡଙ୍କ ଚାଖଣ୍ଡେ ବି କେହି ମାଗଣାରେ ଦେବେନାହିଁ । ପଙ୍କଗଡ଼ିଆରେ ଫସିଯାଇ ଝିଙ୍କିହେଲେ, ପଙ୍କି ଗାଆଁର ଲୋକେ ବଙ୍କୁଲିବାଡ଼ିରେ ଆମକୁ ଟାଣି ରଖିବେ କି ?

ଢେଙ୍କାନାଳର କାଙ୍କଲୁଣ୍ଡା ଗାଆଁରେ ପାଣିଟାଙ୍କି କାମ ହେବ । ଟଙ୍କଧରବାବୁ ଠିକାଦାର ମୂଲିଆଙ୍କ ଟଙ୍କା ଟାଣିବାରେ ସିନା ଟିଙ୍କ । ମେଙ୍କିନାନୀ ଝିଅ ପିଙ୍କି ହେଉଛି ତା ଘରଣୀ । ତାଙ୍କଘରେ ସେ ନିତି ଛୁଙ୍କଦିଆ ତରକାରୀ କରେ । କୁଜି କଙ୍କଡ଼ା ତ ବିଲରୁ ମାଗଣାରେ ମିଳିଯାଏ । ନାଲିଲଙ୍କା ଟିକେ ବାଟି କଙ୍କଡ଼ା ଝୋଳକରେ । ପାଟିରେ ଦେଇଦେଲେ, ବଙ୍କାଟଙ୍କା ବାଟ ବି ସିଧା ଦେଖାଯିବ । ମନରଙ୍କ ଛଡ଼େଇ ଟାଙ୍କେ ପଖାଳ ଠୁଙ୍କିଦେଇ ଆମେ ତାଙ୍କ ଢିଙ୍କିଶାଳ ବାରଣ୍ଡାରେ ଶୋଇପଡ଼ିବା ।"

ରଙ୍କର ସବୁକଥା ଶୁଣିସାରି ବାଙ୍କ ଖିଙ୍କାରିହେଇ କହିଲା-"ପିଙ୍କିଘର ଛୁଙ୍କଦିଆ ତରକାରୀ, କି ନାଲିଲଙ୍କାବଟା କଙ୍କଡ଼ା ଝୋଳ ମୋର ଖାଇବାର ନାହିଁ । ଟେଙ୍କ ଖାଇବା କାମ ମୁଁ କରିବି ନାହିଁ । କଞ୍ଚାଲଙ୍କା ଆଉ ଲୁଣରେ ଟିଙ୍କାମାରି ଟଙ୍କତୋରାଣି ପଛକେ ପିଇବି । ଟାଙ୍କିକାମ କରି ସେ ଟିଙ୍କ ଟ ଙ୍କ ଧ ର ପା ଳ ରେ ପଡ଼ିବି ନାହିଁ ।"

୦୦୦



# ଶଙ୍ଖଚିଲ ଓ ଶଙ୍ଖିବିଲେଇ

ଶଙ୍ଖଚିଲଟିଏ ନିତି ଆକାଶରେ ଉଡ଼େ । ଶଙ୍ଖପରି ଧଳା ଫରଫର ଡେଣାକୁ ସେ ଝାଡ଼ିଦିଏ । ଶଙ୍ଖିବିଲେଇଟିଏ ତାକୁ ଦେଖି ଭାରି ଖୁସିହୁଏ । 'ଶଙ୍ଖଚିଲ ଭାଇ ନମସ୍କାର, ମାଚିଆଚିଲକୁ ଗୋଇଠା ମାର' ଗୀତଟି ଗାଇଦିଏ । ଶଙ୍ଖଚିଲ ତଳକୁ ଉଡ଼ିଆସି ଖଣ୍ଡେ ମାଂସ କି ଗୋଟାଏ ମାଛ ଶଙ୍ଖୀ ପାଖକୁ ପକେଇଦିଏ । ଶଙ୍ଖୀ ସେ ମାଛ ଓ ମାଂସକୁ ଖାଇ ମଜାରେ ପୁଣି ଗୀତଗାଏ । ଶଙ୍ଖିବିଲେଇ ଓ ଶଙ୍ଖଚିଲ ଧୀରେଧୀରେ ପରସ୍ପରକୁ ଭଲ ପାଇଲେ । ଶଙ୍ଖାରିବୁଢ଼ା ଘର ଆଗରେ ଦିନେ ଦୁହେଁ ସଂଗାତ ବସିଲେ । ଶଙ୍ଖାରିବୁଢ଼ା ସାକ୍ଷୀ ରହିଲା । ଶଙ୍ଖା ଦୁଇପଟ ଆଣି ଶଙ୍ଖିବିଲେଇ ଗୋଡ଼ରେ ପିନ୍ଧାଇଦେଲା । ଶଙ୍ଖଚିଲ ଖୁସିହେଇ କହିଲା-"ଶଙ୍ଖାରି ମଉସା ! ଆଜି ତମେ ଆମ ଦୁଇଜଣଙ୍କୁ ବନ୍ଧୁତାର ଶୃଙ୍ଖଳରେ ବାନ୍ଧିଦେଲ । ଧନସଙ୍ଖାଳିହେଇ ଆମେ ତମ ପାଖରେ ରହିବୁ । ଶଙ୍ଖଚୂଡ଼ ସାପ କଣ, ଶଙ୍ଖାସୁର ବି ଆମର କିଛି କ୍ଷତି କରିପାରିବ ନାହିଁ । ସଙ୍ଖୁଡ଼ି ଖିଆପିଆରେ ଆମର ବାରଣ ରହିବ ନାହିଁ । ଶୃଙ୍ଖଳାରେ ଆମେ ଜୀବନଯାପନ କରିବା । ଶଙ୍ଖସାରୁ ତରକାରୀ କରିଦେଲେ ବି ଆମେ ତମ ଘରେ ଖାଇବୁ ।

ଶଙ୍ଖିବିଲେଇ କହିଲା-"ତମକୁ ଆମେ ବାପା ହିସାବରେ ଶଙ୍ଖୁଳି ନେବୁ । ଶଙ୍ଖଚିଲ ତାର ଡେଣାପଙ୍ଖାରେ ତମକୁ ଥଣ୍ଡା ପବନ ଦେଇପାରିବ ।"

ଶଙ୍ଖାରିବୁଢ଼ା ତା ଶଙ୍ଖିନୀବୁଢୀକୁ ଡାକି ନୂଆ ଧନସଙ୍ଖାଳି ଦୁହିଙ୍କୁ ଘର ଭିତରକୁ ଶଙ୍ଖୁଳି ନେଇଗଲା ।

୦୦୦

# ଡେଙ୍ଗା ଲିଙ୍ଗା ଖାଇଲା ଠେଙ୍ଗା

ମଙ୍ଗରାଜପୁର ଗାଆଁରେ କାଙ୍ଗାଳି ଘୁଙ୍ଗାର ଘର । ତା ପୁଅର ନାଆଁ ରଙ୍ଗା । ସେ ତା ବାପା ପରି ଦେଖିବାକୁ ବାଙ୍ଗରା । କିନ୍ତୁ ରଙ୍ଗାର ସାନଭାଇ ଲିଙ୍ଗା ସେମାନଙ୍କଠାରୁ ଡେଙ୍ଗା । ହେଲେ କଣ ହେବ, ତା ମୁହଁଟା ଚୁଙ୍ଗାପରି ଲମ୍ବା ଦିଶେ । ଥରେ ସେ ତା ମାମୁଁଘର ବଙ୍ଗାଳିସାହିକୁ ଯାଇଥିଲା । ସେଇଠି ସେ କେତେଟା ବାଳୁଙ୍ଗା ଟୋକାଙ୍କ ସାଙ୍ଗରେ ମିଶି ଭାଙ୍ଗ ଖାଇବା ଶିଖିଯାଇଥିଲା । ସେଇଠୁ ଫେରିଆସି ଗାଆଁରେ ଚେଙ୍ଗଡ଼ାମୀ ଆରମ୍ଭ କରିଦେଲା । କାମ ପଡ଼ିଲେ ସେ ବାଟ ଭାଙ୍ଗି ଚାଲିଯାଏ । ଖାଇବା ବେଳକୁ ଆସି ବେଙ୍ଗଅପା ପାଖରେ ନୁଙ୍ଗୁରୁ ପୁଙ୍ଗୁରୁ ହୁଏ । ତା ମାଆ ଠେଙ୍ଗା ଧରି ଗୋଡ଼ାଏ । ବିଚରା ଲିଙ୍ଗା ହେଙ୍ଗୁ ଶୁଙ୍ଘିଲା ପରି ମୁହଁଟାକୁ କରି ସଙ୍ଗାରେ ଯାଇ ଲୁଚେ । ଦିନେ ସେ ଲିଙ୍ଗାକୁ କହିଲା-"ତୁ ମୋତେ ଘୁଙ୍ଗାଟାଏ ଭାବିଛୁ । ତେବେ କେମିତି ମଙ୍ଗେଇବି କହ । ଗୋଟାଏ ପୁଅ ରଙ୍ଗାଟା ବାଙ୍ଗରା ହେଇଥିବାରୁ କେତେ ମଙ୍ଗଳାଙ୍କୁ ଡାକିଥିଲି । ଡେଙ୍ଗା ପୁଅଟି ପାଇଲି ଯେ, ତୋର ସବୁକାମ ବେଙ୍ଗା । ତୋ ପାଇଁ ମୁଁ ଦିନେ କାଙ୍ଗାଳ ହେଇଯିବି । ତୁ ଡେଙ୍ଗା ହେଇଥିବାରୁ ସଙ୍ଗା ଉପରକୁ ଚଢ଼ି ଯାଉଛୁ । ମୁଁ ଜାଣେ ତୁ ସଙ୍ଗଦୋଷରୁ ଠୁଙ୍ଗା ହେଇଯାଇଛୁ । ମନ ତୋର ଚୁଙ୍ଗୁଚୁଙ୍ଗୁ ହେଉଛି । ତେବେ ଦିନେ ଏମିତି ଠେଙ୍ଗେଇବି ଯେ, ଡଙ୍ଗରକୁ ଯାଇ ଡାଙ୍ଗ ଗୋଟେଇବୁ ।

ସେଦିନ ରାଗରେ ଲିଙ୍ଗା ନିଜର ଲୁଗାପଟାକୁ ଫିଙ୍ଗିଦେଲା । ଲୁଙ୍ଗି ପିନ୍ଧି ଡଙ୍ଗାର ମଙ୍ଗ ଉପରେ ବସି ଭିଙ୍ଗାରପୁର ଗାଆଁକୁ ଚାଲିଗଲା । ନଈରୁ କେତେଟା ଚେଙ୍ଗମାଛ ଧରି ନେଇଥିଲା । ତାକୁ ଗୋଟାଏ ଠୁଙ୍ଗାରେ ପୂରେଇ ଡଙ୍ଗରପାଉଁଶି ହାଟରେ ଥିବା ଗଛଡାଳରେ ଟାଙ୍ଗି ଦେଇ ତଳେ ଶୋଇପଡ଼ି ଘୁଙ୍ଗୁଡ଼ି ମାରିଲା । ତାକୁ ଦେଖି ତାର ଜଣେ ପୁରୁଣା ସାଙ୍ଗ ଚୁଙ୍ଗା ଚିହ୍ନି ପାରିଲା । ଲିଙ୍ଗା-ଲିଙ୍ଗା ବୋଲି କେତେଥର ତାକୁ ଡାକିଲା । ଲିଙ୍ଗାର ନିଦ ଭାଙ୍ଗିଲା ନାହିଁ । ଡେଙ୍ଗା ଡେଙ୍ଗା ବୋଲି ଡାକିବାରୁ ସେ ଉଠିପଡ଼ି ଟଙ୍ଗଟଙ୍ଗହେଇ ଚାଲିଲା । ଚୁଙ୍ଗା ଧାଇଁଯାଇ ତା ଲୁଙ୍ଗିକୁ ଧରି ଅଟକାଇ କହିଲା-"ଆରେ ଲିଙ୍ଗା ! ମୁଁ ପରା ତୋ ଭାଙ୍ଗଖିଆ ସାଙ୍ଗ ଚୁଙ୍ଗା, ତୁ ମୋତେ ଚିହ୍ନି ପାରୁନୁ ? ଆଜି ମୁଁ ବେଙ୍ଗଳା ପକେଇ ଥକିପଡ଼ିଛି । ସେଇଥିପାଇଁ ଏମିତି ପେଙ୍ଗେଇ ପେଙ୍ଗେଇ ଚାଲୁଛି । ତୁ ମୋ ଢଙ୍ଗଦେଖି ଚିହ୍ନି ପାରୁନୁ । ଚାଲ ଟିକେ ଭାଙ୍ଗ ଖାଇବା । ମନ ଆଉ ଦେହ ରଙ୍ଗା ହେଇଯିବ ।"

ଲିଙ୍ଗା ଥଙ୍ଗଥଙ୍ଗ ହେଇ କହିଲା-"ମୋତେ ଆଉ ସେ ମହଙ୍ଗା ଭାଙ୍ଗକଥା କହନା କି ମୋ ମନକୁ ତୁ ଚଙ୍ଗଚଙ୍ଗ କରନା । ଗଙ୍ଗା ଗଲି ଯେତିକି, ଫଳ ପାଇଲି ସେତିକି । ଏବେ ମୁଁ ଭାଙ୍ଗିଯିବି ପଛେ ବେତଡାଙ୍ଗ ପରି ନଇଁବି ନାହିଁ କି ଭାଙ୍ଗ ଖାଇବି ନାହିଁ ।

୦୦୦



# କାଞ୍ଜିଆହୁଦାରେ କୁଞ୍ଜବାବା

ପାଞ୍ଜିଆଗୁଡ଼ାର କୁଞ୍ଜ ଗୋଟାଏ କର୍ମକୋଢ଼ି । ପୁଞ୍ଜାଏ ରୁଞ୍ଜତୋଳି ସେଥିରେ ସେ ଗୋଟାଏ ମାଳ ତିଆରି କଲା । ଗଞ୍ଜି ଓ ଗାଞ୍ଜିଆକୁ ଢାଉଆ ରଙ୍ଗରେ ରଞ୍ଜେଇଲା । ରୁଞ୍ଜମାଳି ପିନ୍ଧି ନିଜକୁ କୁଞ୍ଜବାବା କହି ପଞ୍ଜାବ ପଳାଇଲା । ମଞ୍ଜୁଷା ଅଞ୍ଚଳର ସଞ୍ଜୟ ସେଇଠି ତାକୁ ଭେଟିଲା ।

ସଞ୍ଜୟ ପାଖରେ ଆଗରୁ ଖଞ୍ଜଣି ଥିଲା । ଖଞ୍ଜା ଭିତରେ ସେ କେତେଟା ଗଞ୍ଜା କୁକୁଡ଼ା ରଖିଥିଲା । ସଞ୍ଜହେଲେ କୁଞ୍ଜବାବା ଗଞ୍ଜେଇ ଟାଣି ଖଞ୍ଜଣି ବଜେଇ ମନୋରଞ୍ଜନ କରେ । ଖଞ୍ଜକରି ସେ କେତେଟା ନୂଆ ଗଞ୍ଜଡ଼ ସୃଷ୍ଟିକରିଥିଲା । ପାଞ୍ଜି ଦେଖି ପୁଳାଏ ମିଛ ପ୍ରଶଂସା କରି ତାଙ୍କ ମନକୁ ରଞ୍ଜେଇ ରଖେ । କାଞ୍ଜି କରିବ ବୋଲି କହି ଗୋଟାଏ କଞ୍ଜୁଷ ବୁଢ଼ା ଅଞ୍ଜନକୁ ଥରେ ମଞ୍ଜା ଖଣ୍ଡେ ମାଗିଥିଲା । ମଞ୍ଜକଥା କହି ପୁଣି କଦଳୀ ଆଣିଥିଲା । ରଞ୍ଜାରେ ତାର ପୁଞ୍ଜାପୁଞ୍ଜା ହେଇ କାକୁଡ଼ିକୁ ଝୁଲୁଥିବା ଦେଖିଥିଲା । ଖଞ୍ଜକରି କୁଞ୍ଜ ତାକୁ ଧୀରେଧୀରେ ଲୁଚେଇ ଖାଇଚାଲିଲା । ମିଞ୍ଜିମିଞ୍ଜି ଆଲୁଅରେ କଞ୍ଜୁଷବୁଢ଼ା କିଛି ଦେଖି ପାରେନାହିଁ । ପଞ୍ଜରା ହାଡ଼କୁ ଭାଙ୍ଗିଲା ଭଳି ସେ ଖଟେ । କୁଞ୍ଜ ପୁଞ୍ଜାପୁଞ୍ଜା କାକୁଡ଼ିକୁ ସଞ୍ଜବେଳିଆ ଚୋରିକରି ନେଇଆସି ମଜାରେ ଖାଏ । ସଞ୍ଜୟ ତା ହାତରେ ଥରେ ଗଞ୍ଜେଇ ପୁଡ଼ିଆଟୀ ଗୁଞ୍ଜିଦେଇ ଭଞ୍ଜନଗରକୁ ଗଲା ।

କୁଞ୍ଜ ତ ଆଗରୁ ତା ଗଞ୍ଜାକୁ ଦେଖି ଲାଳ ବୁହାଉଥିଲା । ସଞ୍ଜୟ ଯିବାପରେ ସେ ଗଞ୍ଜା କୁକୁଡ଼ାର ଲାଞ୍ଜକୁ ଧରି ବେକକୁ ମୋଡ଼ିଦେଲା । ଗଞ୍ଜାମାଂସକୁ ଝୋଳକରି ସବୁଦିନ ଖାଇଲା ।

ସଞ୍ଜୟ ଭଞ୍ଜନଗରରୁ ଫେରି ଗଞ୍ଜା କୁକୁଡ଼ାଙ୍କୁ ଦେଖିବାକୁ ପାଇଲା ନାହିଁ । ସଞ୍ଜୟକୁ ଠକିବା ପାଇଁ କୁଞ୍ଜ ଗୋଟାଏ ଉପାୟ ଖଞ୍ଜିଲା । ପଞ୍ଜୁରୀ ଭିତରେ ମଞ୍ଜାରୀ ବିଲେଇକୁ ପୂରେଇ ରଖିଥିଲା । ସଞ୍ଜୟକୁ ଦେଖି କହିଲା- କଞ୍ଜୁଷବୁଢ଼ା ଅଞ୍ଜନର ମଞ୍ଜାରୀ ବିଲେଇ ତୋର ସବୁ ଗଞ୍ଜାକୁ ଖାଇଛି ।

କଞ୍ଜୁଷବୁଢ଼ା ପାଖକୁ ସଞ୍ଜୟ ଯାଇ କୁଞ୍ଜର ଅସଲ କାରସାଦି ବୁଝିଗଲା । କୁଞ୍ଜ ଗୋଟାଏ ଭଣ୍ଡବାବା ଜାଣି ତାକୁ ନେଇ ସେମାନେ କାଞ୍ଜିଆହୁଦାରେ ଜିମା ଦେଇ କହିଲେ- "ଗଞ୍ଜା ଆଉ କାକୁ ଡ଼ି ଚୋର କୁଞ୍ଜ ଗୋଟଏ ଛକାପଞ୍ଜା କରୁଥିବା ପଶୁ । କାଞ୍ଜିଆହୁଦାରେ ସେ ଓଲିଆ ଗାଈଗୋରୁଙ୍କ ସାଥୀରେ ରହିବ ।"

୦୦୦

# ପାଞ୍ଚାଳୀ

ପାଞ୍ଚପଡ଼ାର ପଞ୍ଚାନନ ଗ୍ରାମପଞ୍ଚାୟତ ଡାକରା ପାଇ ପଞ୍ଚମୁଖୀ ହନୁମାନ ମନ୍ଦିରରେ ପହଞ୍ଚିଲା । ପଞ୍ଚମ ଶ୍ରେଣୀଯାଏ ପଢ଼ିଥିବା ତାର ମେଞ୍ଚଡ଼ ଝିଅ ପାଞ୍ଚାଳୀ କାହିଁକି ପାଞ୍ଚଲୋକଙ୍କ କଥାକୁ କାଟିଦେଲା, ପଞ୍ଚାୟତରେ ସେ ଜବାବ ଦେବ । ପଞ୍ଚମୀ ତିଥିରେ ପାଞ୍ଚଖଣ୍ଡ ଗାଆଁର ଲୋକେ ଗୋଟିଏ ମଞ୍ଚରେ ବସି ପଞ୍ଚଦେବତାଙ୍କ ଆଗରେ ବଳି ଦେବାକୁ ସ୍ଥିର କରିଥିଲେ । ପଞ୍ଚାନନର ପାଳିତ ପାଞ୍ଚମାସିଆ ଛେଳି ବଞ୍ଚିତାକୁ ବଳି ଦେବାକୁ ପଞ୍ଚାୟତ କହିଥିଲା ।

ପାଞ୍ଚାଳୀ ପୁଞ୍ଚି ଖେଳୁଥିବା ବେଳେ ଏକଥା ଶୁଣିଲା । ବଞ୍ଚିତାକୁ ବଞ୍ଚେଇବା ପାଇଁ ଉପାୟ ପାଞ୍ଚିଲା । ପଞ୍ଝୁଆକୁ ଡାକି ପାଞ୍ଚପଡ଼ା ଥାନାକୁ ଯାଇ କହିଲା-"ପଞ୍ଚଦେବତା ତ ପଞ୍ଚାମୃତ ପ୍ରିୟ । ପଞ୍ଚାୟତର ଲୋକେ କୁଞ୍ଚିଦିଆ ଧୋତି ପିନ୍ଧି ବସୁଛନ୍ତି ସତ କିନ୍ତୁ ତାଙ୍କର କିଞ୍ଚିତ ବୁଦ୍ଧିନାହିଁ । ଅଞ୍ଚଳବାସୀଙ୍କୁ ସରକାର କହିଥିଲେ, ବଞ୍ଚିବା ପାଇଁ ସମସ୍ତଙ୍କର ଅଧିକାର ଅଛି । ପଞ୍ଚେନ୍ଦ୍ରୀୟ କଣ ତାଙ୍କର କାମ କରୁନାହିଁ? ଲାଞ୍ଚ ନେବା ଯେମିତି ଅପରାଧ । ପଞ୍ଚଦେବତାଙ୍କ ଆଗରେ ପଶୁବଳି ଦେବା ସେହିପରି ଅପରାଧ । ଚଞ୍ଚକତା କରି ସେମାନେ ମୋ ଛେଳି ବଞ୍ଚିତାକୁ ବଳିଦେବାକୁ ପାଞ୍ଚିଛନ୍ତି ।"

ପାଞ୍ଚାଳୀର ସଞ୍ଚିତ କ୍ରୋଧକୁ ଦେଖି ଥାନାବାବୁ ପଛକୁ ଘୁଞ୍ଚିଗଲେ । ଚଞ୍ଚଳ ଚଞ୍ଚଳ ସେ ଗାଆଁକୁ ଧାଇଁଲେ । ପାଞ୍ଚାଳୀର ମାଆ ଚଞ୍ଚଳା ତେଣେ ରାଗି ପଞ୍ଚମହେଇ ରହିଥିଲା । ସେ ଛାଞ୍ଚୁଣି ଧରି ତାକୁ ପିଟିବାକୁ ଉଚ୍ଛେଇଥିଲା । ପଞ୍ଚାନନ ଗୋଟାଏ ପାଞ୍ଚଣ ଧରି ପଞ୍ଝୁଆକୁ ଖେଞ୍ଚି ପକାଇଲା ।



ପଞ୍ଚାୟତରେ ପହଞ୍ଚି ପୋଲିସ ବଳି ପକେଇବାକୁ ମନା କରିଦେଲା । ପଞ୍ଚାୟତ ଲୋକେ ରାଗରେ ପଞ୍ଚମହେଇ ରହିଥିଲେ ।

୦୦୦

# କଣ୍ଟପଡ଼ାର ସଣ୍ଟୁ ଓ ମଣ୍ଟୁ

କଣ୍ଟପଡ଼ା ବଜାରରେ ଚୁଣ୍ଟିଆ ବୁଢ଼ାର ଦୋକାନ । ସେ ଖୁଣ୍ଟପୋତି ଟେଣ୍ଟ ବାନ୍ଧି ସେଇଠି କଣ୍ଟିଆ ଶୁଖୁଆ ବିକେ । ସେଥିରୁ ଯାହା ମିଳେ, ତାକୁ ସବୁବେଳେ ନିଅଣ୍ଟ ହୁଏ । ଘରେ ସଣ୍ଟୁ ଆଉ ମଣ୍ଟୁଙ୍କୁ ସେ ପ୍ୟାଣ୍ଟ ଖଣ୍ଡେ କିଣି ଦେଇପାରେ ନାହିଁ । ତା ବୁଢ଼ୀ ଥୁଣ୍ଟି ଖର୍ଚ୍ଚ କାଟଛାଣ୍ଟ କରି କଷ୍ଟରେ ଘର ଚଳାଏ ।

ସଣ୍ଟୁ ବଡ଼ ହେଇଗଲା ପରେ ତା ଭାଇ ମଣ୍ଟୁକୁ ଡାକି କହିଲା-"ଏଇଠି ଆଉ କଣ୍ଟିଆ ଶୁଖୁଆ ବେପାର ଚାଲିବ ନାହିଁ । ଏଇ ଜାଗାକୁ ମୁଁ ବାଣ୍ଟିଦେବି । ତାପରେ ତୁ ଖୁଣ୍ଟି ପୋତି ଗୋଟାଏ ଘଣ୍ଟା ଦୋକାନ କରିବୁ । ମୁଁ ଭାବିଛି-ଗୋଟାଏ ସେଣ୍ଟ ଦୋକାନ ଖୋଲିବି । ସେଇଠି ପିମ୍ପରମେଣ୍ଟ ବି ମିଳିବ । କେତେ ଆଣ୍ଟି ଆସି ଏଇଠୁ ଖାଣ୍ଟି ସେଣ୍ଟ କିଣିନେବେ । ଆମକୁ ଆଉ ଖଣ୍ଟପରି ତେଣ୍ଟାଧରି ବୁଲିବାକୁ ପଡ଼ିବ ନାହିଁ କି କାହାର ତଣ୍ଟି କାଟିବାକୁ ପଡ଼ିବ ନାହିଁ । ଆମର ଅଭାବ ମେଣ୍ଟିଗଲେ ଗଲା ।

ଜାଗା ବଣ୍ଟାବଣ୍ଟି କାମ କରିଦେବାକୁ ଆମେ ଚୁଣ୍ଟାମରା ବାବାଙ୍କୁ ଡାକିବା । ସେ ମେଣ୍ଟପୁରର ବେଣ୍ଟପୋଖରି ପାଖରେ ମଠ କରି ରହିଛନ୍ତି । ତାଙ୍କର ଗୋଟାଏ ବେଣ୍ଟଲଗା ଥଣ୍ଟିଆ ଗଜବାଡି ତ ଅଛି । ସେ କଣ୍ଟାଚେନରେ ମାପି ଆମକୁ ଠିକ ଭାବରେ ଜାଗା ବାଣ୍ଟିଦେବେ । ତାଙ୍କ ଅଣ୍ଟିରେ ଦିଇଟା ଚାରିଟା କଣ୍ଟିଆ ଶୁଖୁଆ ଦେଇଦେଲେ ସେ ହେଣ୍ଟାଳ ମାରି ମଠକୁ ଚାଲିଯିବେ ।

ସଣ୍ଟୁର କଥାଶୁଣି ମଣ୍ଟୁ କହିଲା- "ବଣ୍ଟାବଣ୍ଟି କାମ ଠିକଭାବେ ନକରି ଯଦି ଚୁଣ୍ଟାମରା ବାବା କିଛି ଥେଣ୍ଟକାମ କରେ, ତାହେଲେ ମୁଁ ତଣ୍ଟିଆ ମାରିମାରି ନେଇ ତାକୁ ଖୁଣ୍ଟରେ ବାନ୍ଧି ପକେଇବି ।

ମଣ୍ଟୁର କଥାଶୁଣି ସଣ୍ଟୁର ଜାଗା ବଣ୍ଟାବଣ୍ଟି କାମ ବନ୍ଦ ହେଇଗଲା ।

୦୦୦

# ଆଣ୍ଡାମାନର ଭଣ୍ଡ

ଶୀତଦିନେ ଭୀଷଣ ଥଣ୍ଡା ପଡ଼ିଥାଏ । ଆଣ୍ଡାମାନରୁ ଜଣେ ଭଣ୍ଡ ଆସି ବଣ୍ଡାଘାଟିରେ ପହଞ୍ଚିଲା । ସେ ବଣ୍ଡାଲୋକଙ୍କୁ ହୁଣ୍ଡା ମନେକରି ଭଣ୍ଡେଇ ଦେବାକୁ ଚେଷ୍ଟାକଲା । କେତେଟା ଧଣ୍ଡସାପର ଅଣ୍ଡା ଦେଖେଇ କହିଲା– "ମୁଁ ବିଦେଶରୁ ଆନାକୋଣ୍ଡା ସାପର ଅଣ୍ଡା ଆଣିଛି । ସେଥିରୁ ଛୁଆ ବାହାରିଲେ ସେ ମଣ୍ଡାପିଠା ଖାଇବେ । ତମେମାନେ ଘରୁ ଗଣ୍ଡେଲେଖା ଚାଉଳ ଆଉ ନୂଆଲୁଗା ଖଣ୍ଡେ ଲେଖାଏଁ ଦାଣ୍ଡପିଣ୍ଡାରେ ବସ ।"

ଭଣ୍ଡଲୋକର ତୁଣ୍ଡରୁ ଏକଥା ଶୁଣି ଗାଆଁଯାକର ଲୋକ ରୁଣ୍ଡ ହେଇଗଲେ । ମହିଳାମାନେ ଦାଣ୍ଡରେ ପଡ଼ିଥିବା କାଠମୁଣ୍ଡିଆ ପାଖରେ ଠିଆହେଇଗଲେ ।

ବଣ୍ଡାଟୋକା ପାଣ୍ଡିଆ ଦାଣ୍ଡରେ ଥାଇ ଭଣ୍ଡର କଥା ଶୁଣିଲା । ତା ଘରଣୀ ନାଣ୍ଡି ଆଗରୁ ଯାଇ ସେଇଠି ଥିଲା । ସିଏ ତ ହୁଣ୍ଡିଟାଏ । ତା ଭଉଣୀ ଚଣ୍ଡି ଆସି ସେଇଠି ଧଣ୍ଡସାପର ଅଣ୍ଡାକୁ ଦେଖୁଥିଲା । ଲୋକ ରୁଣ୍ଡ ହେଇଯିବାରୁ ଭଣ୍ଡଲୋକଟି ପୁଣି କହିଚାଲିଲା– ଏବେ ଆନାକୋଣ୍ଡା ସାପ ଅଣ୍ଡାରୁ ଛୁଆ ବାହାରିବ । ଧଣ୍ଡସାପ ପରି ଦିଶୁଥିଲେ ବି ଏମାନେ ଗଣ୍ଡା ଆଉ ମଇଁଷିପଣ୍ଡାଙ୍କୁ ବି ଗିଳିଦେଇ ପାରିବେ । ଆନାକୋଣ୍ଡାଙ୍କୁ ଖଣ୍ଡାରେ ହାଣି ହେବନାହିଁ । କାଠଦଣ୍ଡାରେ ପିଟିଲେ ବି ମରିବେ ନାହିଁ । ଏମାନେ ରାଗିଲେ ଭେଣ୍ଡା ଆଉ ଗୁଣ୍ଡାଙ୍କର ବି ଝଣ୍ଡା ଉଡ଼େଇ ଦେବେ । ସେଥିପାଇଁ ମୁଁ ତାଙ୍କ ତୁଣ୍ଡରେ ବିଣ୍ଡା ମାରିଦେଇ ଗୋଟାଏ ହଣ୍ଡାରେ ପୂରେଇ ରଖିଦେବି । ଆଉ ଗୋଟାଏ ସୁନାକୁଣ୍ଡରେ କାଣ୍ଡିଆ କୁଣ୍ଡା ରଖି ତାଙ୍କୁ ଖୁଆଇବି ।

ବାହାପିଆ ଭଣ୍ଡଲୋକର କଥା ଶୁଣିଶୁଣି ଭେଣ୍ଡିଆ ପାଣ୍ଡିଆର ମୁଣ୍ଡ ଗଣ୍ଡଗୋଳ ହେଇଗଲା । ଠକାମୀ ଭଣ୍ଡାମୀକୁ ସେ ସହିପାରେ ନାହିଁ । ସେ ଆଗରୁ ହାଣ୍ଡିଆ ପିଇଥିଲା । ମିଛୁଆ ଭଣ୍ଡକୁ ପାନେ ଦେବାପାଇଁ ତା ହାତ କୁଣ୍ଡେଇ ହେଲା । ତଳେ ପଡ଼ିଥିବା ପୁଳାଏ ଛିଣ୍ଡାକନାକୁ ନେଇ ସେ ଭଣ୍ଡର ପାଟିରେ ବିଣ୍ଡା ଦେଇଦେଲା । କାଠଦଣ୍ଡାରେ ତା ପିଠିରେ ଦୁଇ ଚାରିଗଣ୍ଡା ପାହାର ଦେଇ ଥଣ୍ଡା କରିଦେଲା । ଭଣ୍ଡ ସେଠାରୁ ଖସି ଯିବାକୁ ବାଟ ଉଣ୍ଡୁଥିଲା । ଏତିକିବେଳେ ନାଣ୍ଡି କହିଲା–"ଫାଣ୍ଡିବାବୁଙ୍କୁ ଡାକି ଏ ଭଣ୍ଡକୁ ଦେଇଦିଅ । ସେ ଆମକୁ ହୁଣ୍ଡା କି ମୁଣ୍ଡା ଭାବୁଥିଲା । କିଛି ଗୋଟାଏ କାଣ୍ଡ କରିବା ପୂର୍ବରୁ ତା ଭଣ୍ଡାମୀ ଧରା ପଡ଼ିଗଲା । ଆଜି ତ ସେ ନିଶ୍ଚୟ ଆମକୁ ଭଣ୍ଡିଦେଇ କେତେ କଣ ନେଇଯାଇଥାନ୍ତା । ଏବେ ତାକୁ କୁହ, ସେ ତା ଅଣ୍ଡାକୁ ଧରିଆସୁ । ସମସ୍ତଙ୍କୁ ମୁଣ୍ଡିଆ ମାରି ଗୁରୁଣ୍ଡି ଗୁରୁଣ୍ଡି ସିଧା ଆଣ୍ଡାମାନ ଚାଲିଯାଉ ।

୦୦୦

# ଅନନ୍ତପୁରର ଗନ୍ତାୟତ

ଅନନ୍ତପୁର ତନ୍ତୀସାହିରେ ପ୍ରଶାନ୍ତ ଗନ୍ତାୟତଙ୍କ ଘର । ତାଙ୍କ ସ୍ତ୍ରୀ ଦମୟନ୍ତୀଙ୍କର ସନ୍ତାନ ସନ୍ତତି ନଥିବାରୁ ସେ ଦାନ୍ତୁଆଣୀ ଦେବୀଙ୍କୁ ପୂଜାରେ ସନ୍ତୁଷ୍ଟ କରିଥିଲେ । ଗନ୍ତାୟତେ ସନ୍ତାନମାନଙ୍କ ନାମ ଶ୍ରୀମନ୍ତ, ଶ୍ରୀକାନ୍ତ, ବସନ୍ତ, ଜୟନ୍ତ ଓ ହେମନ୍ତ ରଖିଥିଲେ । ଏନ୍ତୁଡ଼ିଶାଳରୁ ତ ବଡ଼ଝିଅ ଶାନ୍ତି ମରିଯାଇଥିଲା, ତେଣୁ ତା କଥାକୁ ସେ ଚିନ୍ତା କରନ୍ତି ନାହିଁ । ସାନଝିଅର ନାମ ରଖିଛନ୍ତି-ବାସନ୍ତି । ସବୁ ପିଲାଙ୍କ ନାମରେ ନ୍ତ ଅକ୍ଷର ଥିବାରୁ ସେ ସନ୍ତୁଷ୍ଟ ହେଇଥିଲେ ।

ଗନ୍ତାୟତେ ସବୁ ମାସନ୍ତେର କାନ୍ତାରଦେବୀଙ୍କ ପାଖରେ ଥିବା ଚିନ୍ତାମଣି ବାବାଙ୍କଠାରୁ ଯନ୍ତର ମନ୍ତର ଶିଖନ୍ତି । ସେଇଠୁ ସନ୍ତରା ଭୋଗ ଖାଇ ମନ୍ତୁରା ପାଣି ଧରି ଫେରନ୍ତି । ରାତିରେ ଜନ୍ତା ବସେଇ ବଣଜନ୍ତୁମାନଙ୍କୁ ଧରିଆଣି ତାଙ୍କ ଉପରେ ମନ୍ତୁରା ପାଣି ଛିଞ୍ଚି ଦିଅନ୍ତି । ଜନ୍ତୁମାନେ ଅଶାନ୍ତହେଇ ଲୋକଙ୍କୁ ହନ୍ତସନ୍ତ କରନ୍ତି ।

ତାଙ୍କର ଅନ୍ତଲ ପେଟ ଆଉ ଦାନ୍ତୁରା ମୁହଁକୁ ଦେଖି ପିଲାମାନେ ତ ଡରନ୍ତି, ପୁଣି ତାଙ୍କ ଅଘଷା ଦାନ୍ତକୁ ଦେଖି ବାନ୍ତି କରିପକାନ୍ତି । ସେଥିରେ ସେ ସନ୍ତାପିତ ହୁଅନ୍ତି ନାହିଁ ।

ଥରେ ତାଙ୍କର ବୁଢ଼ା ଚାକର ରଜନୀକାନ୍ତ ଚିନ୍ତିତ ହେଇ କହିଲା-"ସାଆନ୍ତେ ! ଏବେ ଟିକେ ତମେ ପିଲାଙ୍କ କଥା ଚିନ୍ତାକର । ଚିନ୍ତନ ଫଳରେ ତମର ଚିନ୍ତାଧାରା ଉନ୍ନତ ହେବ । ମନରେ ଥିବା ଅଶାନ୍ତି ଆଉ ଭ୍ରାନ୍ତି ଦୂର ହେବ । ଯନ୍ତର ମନ୍ତର କାମରେ ଅଯଥାରେ କ୍ଲାନ୍ତ ହେଉଛ । ସନ୍ତର୍ପଣରେ ଧନ୍ୱନ୍ତରୀ ଦେବତାଙ୍କୁ ପୂଜାକଲେ, ତମର କାନ୍ତି ଉଜ୍ଜ୍ୱଳ ହେଇଉଠିବ ।

ରଜନୀକାନ୍ତର କଥାଶୁଣି ଗନ୍ତାୟତେ ବି ଚିନ୍ତାରେ ପଡ଼ିଗଲେ । ନିଜର ଅନ୍ତଲପେଟକୁ ଦେଖେଇ କହିଲେ- "ମୋର ଅନ୍ତବୁଜୁଳାଟା ବଢ଼ିଯାଇଛି ବୋଲି ତୁ ଏମନ୍ତ କଥା କହୁଛୁ । ଏଥିପାଇଁ ମୁଁ ହନ୍ତସନ୍ତ ହେଉଛି । ଅନ୍ତଲ ପେଟଟାକୁ ପରେ କମେଇବି । ଆଜିଠାରୁ ମୁଁ ଅନ୍ତତଃ ଭଲକରି ଦାନ୍ତ ଘଷିବି । ଏଥିରୁ ପିଲାଙ୍କୁ ଟିକେ ଶାନ୍ତି ମିଳିବ ।

୦୦୦

# ନନ୍ଦପୁରର ନନ୍ଦୁ

ନନ୍ଦପୁର ଗାଆଁରେ ନନ୍ଦୁବୁଢ଼ାର ଘର । ତା ମନରେ ଟିକିଏ ବି ଛନ୍ଦ କପଟ ନ ଥାଏ । ତାର ଘରଣୀ ଚନ୍ଦିରୀଟା ବଡ଼ ହୁନ୍ଦୁରୀ । ସେ କଥାକଥାକେ ନନ୍ଦୁକୁ ନିନ୍ଦାକରି କନ୍ଦାଇବାକୁ ପଛାଏ ନାହିଁ । ତାକୁ ଚନ୍ଦା ଚନ୍ଦା କହି ଚିଡ଼ାଏ । ବିଚରା ଚନ୍ଦୁ କାହାର ଫନ୍ଦି ଫିକରକଥା ବୁଝିପାରେନାହିଁ । ଟିକିଏ କଥାରେ କାନ୍ଦିପକାଏ । ତେଣୁ ତାକୁ ସମସ୍ତେ କାନ୍ଦୁରା ନନ୍ଦୁ ଭାବରେ ଜାଣନ୍ତି । ତା ଚନ୍ଦାମୁଣ୍ଡରେ ଆଲୁଅ ପଡ଼ିଲେ, ଚାନ୍ଦ ଉଇଁଲାପରି ଦିଶେ ।

ନନ୍ଦୁର ଦୁଇଟି ଝିଅଙ୍କ ନାଁ ହେଉଛି- ଇନ୍ଦୁ ଆଉ ବିନ୍ଦୁ । ସେମାନେ ବି ନନ୍ଦୁପରି ନାକକାନ୍ଦୁରୀ ହେଇଥିଲେ । ଗୋଟିଏ ବୋଲି ପୁଅ ମନ୍ଦରା ଦୁଇ ଭଉଣୀଙ୍କୁ କନ୍ଦାଏ । ବଜାରକୁ ଯାଇ ପୁଣି ବୁନ୍ଦିଆଲଡୁ ଆଣି ଖୁଆଏ ।

କୁନ୍ଦୁରା ହାଟରେ ନନ୍ଦୁର କନ୍ଦବେପାର ଚାଲେ । ଭଲମନ୍ଦରେ ସେ ହାଟଚାନ୍ଦା ଦିଏ । ମନ୍ଦରା କନ୍ଦବୋଝ ମୁଣ୍ଡେଇ ହାଟରେ ପହଞ୍ଚାଇଦିଏ । ଦିନେ ତା ମାଆ ତାକୁ ଖୁନ୍ଦାଏ ପକାଇଥିଲା । ସେହିଦିନରୁ ସେ ଆଉ କୁନ୍ଦୁରା ହାଟକୁ ଗଲାନାହିଁ । ଥରେ କେତେଟା ବାନ୍ଦର ମୁହାଁ ଟୋକା ନନ୍ଦୁକୁ ମାଡ଼ମାରି ଓଲଟା କେସ୍‌ରେ ଛନ୍ଦି ପକାଇଲେ । ଲୋକନିନ୍ଦା ସହି ନପାରି ଚନ୍ଦୁ କନ୍ଦ ବେପାର ଛାଡ଼ି ବେମାର ହେଇଗଲା । ଏଣେ ମନ୍ଦରା କହିଲା ମୋ ଭାଗ୍ୟମନ୍ଦ । କିଛି କାମଧନ୍ଦା ନକରି ହାତଛନ୍ଦି ଘରେ ବସିଲେ, କିଏ ଖାଇବାକୁ ଦେବ ? ଘରଟା ତାକୁ ବନ୍ଦିଶାଳା ପରି ଲାଗେ । ତେଣୁ ସେ ନିତି ମନ୍ଦିରକୁ ଯାଏ । ସିନ୍ଦୂର ମୁଣ୍ଡି ଠାକୁରାଣୀଙ୍କ ପାଖରେ ବନ୍ଦନା ଗାଇ ନିତି କାନ୍ଦେ ।

ଦିନେ ଜଣେ ଅନ୍ଧବୁଢ଼ା ମନ୍ଦିର ବେଢ଼ାରେ ବସି କେନ୍ଦରା ବଜାଉଥିଲା । ମନରୁ ଫାନ୍ଦି ଗୀତ ଗାଉଥିଲା । ତା ଗୀତ ଶୁଣି ମନ୍ଦରା ମନରେ ଥିବା ଦ୍ୱନ୍ଦ୍ୱ ଦୂର ହେଇଗଲା । ଭଲମନ୍ଦ ବିଚାର ନକରି ସେ ଚନ୍ଦାହାଣ୍ଡି ଚାଲିଗଲା । ସେଇଠି ରହି କାଠକୁନ୍ଦ କରିବା ଶିଖିଲା । ଏଣେ ଘରେ ସମସ୍ତେ କନ୍ଦାକଟା କଲେ । ମନ୍ଦିରକୁ ଯାଇ ଆଳତି ଜାଳି ବନ୍ଦାପନା କଲେ । ପନ୍ଦରଦିନ ପରେ ସେହି ଗାଆଁର ଶ୍ୟାମ ସୁନ୍ଦର ଚନ୍ଦାହାଣ୍ଡିରୁ ଫେରି ମନ୍ଦରା ପଠେଇଥିବା ଚିଠି ଆଉ ଟଙ୍କା ଦେଲା । ସମସ୍ତେ ଶୁଭ ଖବର ପାଇ ଆନନ୍ଦିତ ହେଲେ ।

୦୦୦





**ଡକ୍ଟର କୃତ୍ତିବାସ ନାୟକ** ଓଡ଼ିଆ ସାହିତ୍ୟର ଏକ ସଶ୍ରଦ୍ଧ ଉଚ୍ଚାରଣ । ସାହିତ୍ୟର ବିଭିନ୍ନ ବିଭାଗରେ କଲମ ଚଲାଇ ପ୍ରତ୍ୟେକ କ୍ଷେତ୍ରରେ ଏକ ସଫଳ ବ୍ୟକ୍ତିତ୍ୱ ଭାବେ ସୁପରିଚିତ । ୧୯୮୩ ମସିହାରୁ ଆକାଶବାଣୀର ଜଣେ ସ୍ୱୀକୃତିପ୍ରାପ୍ତ ଗୀତିକାର ଭାବେ ବେଶ୍ ଜଣାଶୁଣା । ବାଲିମେଳା, ଜୟପୁରରୁ ପ୍ରକାଶିତ ଶିଶୁପତ୍ରିକା 'ଶିଶୁ ନୟନ' 'ଆମେ ଶିଶୁ' ଓ 'ଶିଶୁ ରାଇଜ'ର ସଫଳ ସମ୍ପାଦକ । ୧୯୮୯ରୁ ୨୦୧୫ ପର୍ଯ୍ୟନ୍ତ ଆକାଶବାଣୀର ବରିଷ୍ଠ ଅଧିକାରୀ ଭାବରେ କାର୍ଯ୍ୟରତ ଥାଇ ଜୟପୁର କେନ୍ଦ୍ରର ନିର୍ଦ୍ଦେଶକ ପଦବୀରୁ ଅବସର ଗ୍ରହଣ ।

ଶିଶୁସାହିତ୍ୟ ପାଇଁ ୧୯୯୨ ଓ ୧୯୯୯ ମସିହାରେ ଜାତୀୟ ଶିଶୁସାହିତ୍ୟ ପୁରସ୍କାରପ୍ରାପ୍ତ । ତାଙ୍କର ଉପନ୍ୟାସ 'ଶୁଭଲକ୍ଷ୍ମୀ'ର ହିନ୍ଦୀ ସଂସ୍କରଣ ପାଇଁ ୨୦୦୨ ବର୍ଷର ଜାତୀୟ ପୁରସ୍କାରରେ ସେ ପୁରସ୍କୃତ । ଜ୍ଞାନ ସଂଗ୍ରହ, ଉତ୍କଳ ଦର୍ପଣ, ଢେଙ୍କାନାଳ ଦର୍ପଣ, ଆଜିର କୋରାପୁଟ, କେନ୍ଦୁଝର ଦର୍ପଣ, ସମ୍ବଲପୁର ପ୍ରତିଭା ଓ ରାଉରକେଲା ଦର୍ପଣ ପ୍ରଭୃତି ସୂଚନା ସାହିତ୍ୟ ସମେତ ତାଙ୍କର 'କୁଳବୋହୂ' ଓ 'ହସକୁରୀ ଜହ୍ନ' ଉପନ୍ୟାସ ଓ ୭ଖଣ୍ଡ ଗୀତି କବିତା ପୁସ୍ତକ ଘରେ ଘରେ ପରିଚିତ । ଅଦ୍ୟାପି ୧୭୦ ଖଣ୍ଡ ପୁସ୍ତକ ପ୍ରକାଶ ପାଇଛି । ୨୦୧୪ ମସିହାରେ କେନ୍ଦ୍ରାପଡ଼ା ଜିଲ୍ଲା ସାହିତ୍ୟ ପରିଷଦ ଦ୍ୱାରା 'କେନ୍ଦ୍ରାପଡ଼ା ଗୌରବ' ସମ୍ମାନ ମଧ୍ୟ ଲାଭ କରିଛନ୍ତି । ଓଡ଼ିଶାର ବିଭିନ୍ନ ସାଂସ୍କୃତିକ ଓ ସାହିତ୍ୟ ଅନୁଷ୍ଠାନ ଦ୍ୱାରା ସମ୍ମାନିତ ହେବା ସହିତ ଉତ୍କଳ ସାହିତ୍ୟ ସମାଜ ତରଫରୁ ୨୦୧୩ ମସିହାରେ ସେ ଶ୍ରେଷ୍ଠ ଶିଶୁ ସାହିତ୍ୟିକ ଭାବେ ପୁରସ୍କୃତ ହୋଇଛନ୍ତି ।

-ପ୍ରକାଶକ





ISBN 938796834-0

9789387968349